# ତଥ୍ୟ: କୁଡୁମୁଡୁ, ଗଢା ଏବଂ ପ୍ରଖ୍ୟାତ ପାର୍ଲେ ବିସ୍କୁଟଙ୍କର ଅନେକ ନକଲି ମଧ୍ୟ ଅଛନ୍ତି।

ସିଦ୍ଧ କରିବାକୁ ହେବ ଯେ: ଦେଖିବାକୁ ପାର୍ଲେଙ୍କ ଭଳି ବିସ୍କୁଟ ତିଆରି କରି ପାରିବ ସିନା, କିନ୍ତୁ ସ୍ୱାଦରେ-କେବେ ହେଲେ ନୁହେଁ।

ପ୍ରମାଣ: କ) କିଣିବା ପରୀକ୍ଷା:

ପ୍ରଥମ କଥା ମନେ ରଖିବେ ଯେ, ପାର୍ଲେ କ୍ରାକ୍‌ଜାକ୍ କେବେହେଁ ଖୋଲା ମିଳନ୍ତିନ। ଇସ୍ୱେ ସର୍ବଦା ସ୍ୱଚ୍ଛତାପୂର୍ବକ ସିଲବନ୍ଦ କରା ହୋଇଥିବା ରଙ୍ଗୀନ ପୁଡ଼ାରେ ମିଳନ୍ତି, ଯଦ୍ୱାରା ତାଙ୍କର ନିଜସ୍ୱ ତାଜାପଣ ଅବିସ୍ଖଳିତ ରହେ।

ଖ) ପ୍ୟାକେଟ ପରୀକ୍ଷା:

ଆକର୍ଷକ ପାର୍ଲେ କ୍ରାକ୍‌ଜାକ୍ ପ୍ୟାକ ଯେ କୌଣସି ଆକାରରେ ଥିଲେବି ଅତି ସହଜରେ ଚିହ୍ନି ହୋଇଯିବ। ଦ୍ୱିବାର ସନ୍ଦେହମୁକ୍ତ ହେବା ପାଇଁ, ପ୍ୟାକ ଉପରେ ଥିବା **P-A-R-L-E** ନାଁଆଟି ଠିକ୍ ଭାବରେ ଦେଖନ୍ତୁ।

ଗ) ସ୍ୱାଦ ପରୀକ୍ଷା:

ଗୋଟିଏ ବିସ୍କୁଟ ନେଇ ଚାଖିକରି ତ' ଦେଖନ୍ତୁ! ଯଦି ଏହା ଚବିଷ୍ଟ ଏବଂ କୁଡୁମୁଡୁ ଲାଗୁଛି, ତେବେ ନିଃସନ୍ଦେହ ରହନ୍ତୁ, ଏହା ଅସଲ ପାର୍ଲେ କ୍ରାକ୍‌ଜାକ୍।

-ଫଳାଫଳ




## ଏମାନଙ୍କ ସମ୍ମିଶ୍ରଣରେ-ବିସ୍କୁଟର ସର୍ବୋତ୍ତମ ସ୍ୱାଦୋପଭୋଗ।

ଆପଣଙ୍କ କେଶ
ଆବଶ୍ୟକ କରେ

# ରୀଟାର ଯତ୍ନ

ରୀଟା ଏକ ଉତ୍କୃଷ୍ଟ କେଶ ପ୍ରସାଧନ ସାମଗ୍ରୀ ଅତ୍ୟଧିକ ମାତ୍ରାର ନିର୍ଯ୍ୟାସରେ ପ୍ରସ୍ତୁତ ଓ ମନମତାଣିଆ ସୁଗନ୍ଧଯୁକ୍ତ । ଏହା ବିଳାସମୟୀ ପ୍ରାକୃତିକ କେଶ ବଢ଼ାଇବା ଓ ମସ୍ତିଷ୍କ ଥଣ୍ଡା କରିବା ନିଶ୍ଚିତ । ରୀଟା ପୁରୁଷ ଓ ମହିଳା ଉଭୟଙ୍କ ପାଇଁ ଏକ ଆଦର୍ଶ ପ୍ରସାଧନ ଦ୍ରବ୍ୟ ।







ରୀଟା ମନୋହର କେଶ ବଢ଼ାଏ
ଆଜି ଏକ ବୋତଲ କିଣନ୍ତୁ
ସବୁଠାରେ କିଣିବାକୁ ମିଳୁଛି

ଭେଟୋ କୋ:, ବମ୍ବେ * କଲକତା * ମାଦ୍ରାଜ




# ଜହ୍ନମାମୁଁ

ସଂସ୍ଥାପକ : 'ଚକ୍ରପାଣୀ'

ସଞ୍ଚାଳକ : ନାଗିରେଡ୍ଡୀ

ଅନ୍ୟକୁ ଅନୁକରଣ କରିବା କେତେ ବିଷମ କଥା, ତାହାହିଁ ପ୍ରତିପାଦିତ ହୋଇଛି ଏ ସଂଖ୍ୟାର ବେତାଳ କଥାରେ । ଦ୍ୱିତୀୟରେ, ଜଣେ କ'ଣ କହିଲା ତାହା ବଡ଼ କଥା ନୁହେଁ, କହିବା ପଛରେ କି ପ୍ରକାର ମନୋଭାବ ଥିଲା, ତାହାହିଁ ବଡ଼ କଥା । ଜଣେ ନିରକ୍ଷର ସରଳଲୋକ ସଦ୍‌ଭାବ ନେଇ ରାଜାଙ୍କୁ ଯାହା କହିଥିଲା, ପଣ୍ଡିତେ ଅହମିକା ପ୍ରଣୋଦିତ ହୋଇ ସେହି କଥା କହି ବିପଦରେ ପଡ଼ିଲେ ।

## ଅମରବାଣୀ

ପୁଂସାମୁନ୍ନତଚିତ୍ତାନାଂ ଦ୍ୱୟମେବ ସୁଖାବହମ୍ ।
ସର୍ବସଙ୍ଗନିବୃତ୍ତିର୍ବା ବିଭୂତିର୍ବା ସୁବିସ୍ତରା ॥

ଯିଏ ଉନ୍ନତ ଚିନ୍ତାଯୁକ୍ତ ମଣିଷ, ତାଙ୍କୁ ଦୁଇ ପ୍ରକାରେ ସନ୍ତୋଷ ମିଳିପାରେ : ସମ୍ପୂର୍ଣ୍ଣ ଏକାକୀ ଓ ଅଲଗା ରହିବା ଦ୍ୱାରା, ନହେଲେ ସମସ୍ତଙ୍କ ଉପରେ ପ୍ରଭାବ ବିସ୍ତାର କରିବା ଦ୍ୱାରା ।

ବର୍ଷ : ୧୩ ଫେବୃଆରୀ ୧୯୮୦ ଅଙ୍କ : ୮

ପ୍ରତିସଂଖ୍ୟା : ଟ୧.୫୦ ବାର୍ଷିକ ମୂଲ୍ୟ : ଟ୧୮.୦୦




ପ୍ରଶ୍ନ : "ପଞ୍ଚତନ୍ତ୍ର" କିଏ ଓ କାହିଁକି ଲେଖିଥିଲେ ? "ପଞ୍ଚତନ୍ତ୍ର" ନାମର ତାତ୍ପର୍ଯ୍ୟ କ'ଣ ?

ଉତ୍ତର : "ପଞ୍ଚତନ୍ତ୍ର" ପୃଥିବୀର ପ୍ରାଚୀନତମ କାହାଣୀ ସଙ୍କଳନମାନଙ୍କ ମଧ୍ୟରୁ ଅନ୍ୟତମ । ଗବେଷକମାନଙ୍କ ମତରେ ଏହା ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରୁ ଖ୍ରୀଷ୍ଟପର ପ୍ରଥମ ଶତାବ୍ଦୀ ଭିତରେ ଲିଖିତ ହୋଇଥିଲା । ତେବେ ଏକ ଗ୍ରନ୍ଥର ଅନ୍ତର୍ଭୁକ୍ତ ହେବା ପୂର୍ବରୁ ମଧ୍ୟ "ପଞ୍ଚତନ୍ତ୍ର"ର କାହାଣୀମାଳାରୁ ଅନେକଗୁଡ଼ିଏ ଲୋକସମାଜରେ ପ୍ରଚଳିତ ଥିବା ସମ୍ଭବ ।

ଦାକ୍ଷିଣାତ୍ୟରେ ମହିଳାରୂପ୍ୟ ନାମକ ରାଜ୍ୟ ଥିଲା । [କାହା କାହା ମତରେ ମହିଳାରୂପ୍ୟ ବିହାରରେ ଅବସ୍ଥିତ ଥିଲା ।] ସେ ରାଜ୍ୟର ରାଜା ତାଙ୍କ ପୁଅମାନଙ୍କ ଶିକ୍ଷାଦୀକ୍ଷା ନେଇ ବିଶେଷ ଚିନ୍ତିତ ଥିଲେ । ରାଜପୁତ୍ରମାନେ ମୋଟେ ପାଠ ପଢ଼ିବାକୁ ଚାହୁଁ ନ ଥିଲେ । ରାଜା ପଣ୍ଡିତମାନଙ୍କର ଏକ ସଭା ଡକାଇ ନିଜ ସମସ୍ୟା ସେମାନଙ୍କ ଆଗରେ ଉପସ୍ଥାପିତ କଲେ । ପଣ୍ଡିତମଣ୍ଡଳୀରୁ ଜଣେ ରାଜାଙ୍କ ସହାୟତା କରିବା ନିମନ୍ତେ ବାହାରିଲେ । ତାଙ୍କ ନାମ ବିଷ୍ଣୁଶର୍ମା । ସେ ରାଜପୁତ୍ରମାନଙ୍କୁ କେବଳ କାହାଣୀମାନଙ୍କ ମାଧ୍ୟମରେ ଶିକ୍ଷା ଦେବାକୁ ଚେଷ୍ଟା କଲେ ଓ ସେଥିରେ ସଫଳ ହେଲେ । ପଣ୍ଡିତ ବିଷ୍ଣୁଶର୍ମା ବିବୃତ କରିଥିବା କାହାଣୀମାନହିଁ "ପଞ୍ଚତନ୍ତ୍ର" ନାମରେ ବିଖ୍ୟାତ ।

"ପଞ୍ଚତନ୍ତ୍ର" ନାମର ତାତ୍ପର୍ଯ୍ୟ ପାଞ୍ଚ ବିଦ୍ୟା । ଗଳ୍ପ ଗୁଡ଼ିକୁ ପାଞ୍ଚ ଭାଗରେ ବିଭକ୍ତ କରାଯାଇଛି । ଯଥା: ମିତ୍ରଭେଦ, ମିତ୍ର ସମ୍ପ୍ରାପ୍ତି, କାକୋଲୂକୀୟମ୍, ଲବ୍ଧପ୍ରଣାଶ ଏବଂ ଅପରୀକ୍ଷିତକାରକ ।

ପଞ୍ଚତନ୍ତ୍ରର କାହାଣୀମାଳା ଅତି ପ୍ରାଚୀନ କାଳରୁହିଁ ପୃଥିବୀର ବହୁ ଦେଶକୁ ବ୍ୟାପ୍ତ ହୋଇଛି । ଆରବ ବଣିକମାନେ ଭାରତରୁ ଏସବୁ କାହାଣୀ ଶୁଣି ମଧ୍ୟପ୍ରାଚ୍ୟରେ ଗପୁଥିଲେ । କାଳକ୍ରମେ ସେସବୁ ପାଶ୍ଚାତ୍ୟ ଅଞ୍ଚଳକୁ ଗଲା । ବିଦେଶର ବହୁ ପ୍ରାଚୀନ କାହାଣୀରେ ପଞ୍ଚତନ୍ତ୍ରର ପ୍ରଭାବ ପରିଲକ୍ଷିତ ହୁଏ । ଭାରତର ଅନ୍ୟ ଯେଉଁ କାହାଣୀ ସଙ୍କଳନ ଏପରି ପ୍ରଭାବ ବିସ୍ତାର କରିଥିଲା, ତାହା ହେଲା କଥାସରିତ୍‌ସାଗର ।



# ପଞ୍ଚତନ୍ତ୍ର

ବୃଦ୍ଧମାଙ୍କଡ଼ ରଜାଙ୍କ ଦ୍ୱାରା ତା' ଆତ୍ମୀୟ-ପରିଜନ ମରି ହୋଇ ସେମାନଙ୍କ ଚର୍ବିରେ ଆହତ ଘୋଡ଼ାମାନଙ୍କର ଚିକିତ୍ସା କରାଯାଇ-ଥିବା କଥା ଶୁଣି ବହୁତ ଦୁଃଖ କଲା । ତା'ପରେ ନିଜକୁ ନିଜେ କହିଲା, "ମାଙ୍କଡ଼ମାନେ ମୋ ପରାମର୍ଶ ନ ଶୁଣିବା ହେତୁ ବିନାଶ ଗଲେ ସତ, ତଥାପି ସେମାନେ ଥିଲେ ମୋର ଆତ୍ମୀୟ । ସେମାନଙ୍କୁ ମାରି ରଜା ବିଶ୍ୱାସଘାତକତା କରି-ଛନ୍ତି । ଏଭଳି ବିଶ୍ୱାସଘାତକତାକୁ ସହିଯିବା କାପୁରୁଷତା । ଯିଏ ନିଜ ଲୋକଙ୍କ ବିନାଶ-କାରୀଙ୍କ ଉପରେ ପ୍ରତିଶୋଧ ନ ନିଏ, ସିଏ ଭୀରୁ । ମୁଁ ନିଶ୍ଚେ ରଜା ଉପରେ ପ୍ରତିଶୋଧ ନେବି ।"

ବୃଦ୍ଧମାଙ୍କଡ଼ ଏହିପରି ଚିନ୍ତା କରି ବଣ ଭିତରେ ବୁଲୁଥିଲା ବେଳେ ତାକୁ ଖୁବ୍ ଶୋଷ ଲାଗିଲା । ସେ ଗୋଟିଏ ପଦ୍ମହ୍ରଦ ଠାବ କରି ତହିଁରୁ ପାଣି ପିଇବାକୁ ଯାଇ ଲକ୍ଷ୍ୟ କଲା, ସେ ଅଞ୍ଚଳରେ କୌଣସି ପ୍ରାଣୀର ଯାତାୟତ ନାହିଁ । ସବୁ ନୀରବ । ସେ ଆହୁରି ମଧ୍ୟ ଲକ୍ଷ୍ୟ କଲା, ହ୍ରଦ ଆଡ଼କୁ ଅନେକେ ଯାଇଥିବାର ପାଦଚିହ୍ନରୁ ଜଣାପଡ଼ୁଛି; କିନ୍ତୁ କେହି ଫେରିବାର ପାଦଚିହ୍ନ ନାହିଁ ।

"ଏ ହ୍ରଦରେ ପଦ୍ମବନ ଭିତରେ ନିଶ୍ଚୟ ମାୟାମୂଳକ କୁମ୍ଭୀରଟାଏ ଲୁଚି ରହିଛି । ଯିଏ ହ୍ରଦ ପାଖକୁ ଆସେ, ତାକୁ ସେ ଟାଣି ନେଇ ଖାଏ । ମୋତେ ସାବଧାନ ହେବାକୁ ପଡ଼ିବ ।" ସେ ଭାବିଲା । ତା'ପରେ କୂଳରେ ଥାଇ ଗୋଟାଏ ପଦ୍ମନାଡ଼ ଭାଙ୍ଗିଆଣି ସେହି ନାଡ଼ର ଗୋଟିଏ ପ୍ରାନ୍ତ ପାଣିରେ ବୁଡ଼ାଇ ଅନ୍ୟ ପ୍ରାନ୍ତ ଶୋଷି ପାଣି ପିଇବାକୁ ଲାଗିଲା ।



ଅଳ୍ପ ସମୟ ଭିତରେ କୁମ୍ଭୀରଟାଏ ପାଣି ଭିତରୁ ମୁଣ୍ଡ ତୋଳିଲା । ତା' ବେକରେ ହୀରାର ହାର ।

"ଆଜି ଯାଏ ଏ କୂଳକୁ ପାଣି ପିଇବାକୁ ବା ସ୍ନାନ କରିବାକୁ ଯିଏ ଆସିଛି, ସିଏ ମୋ ହାବୁଡ଼ରେ ପଡ଼ିଛି । କିନ୍ତୁ ଦେଖୁଛି, ତୁମେ ବଡ଼ ଚାଲାକ । ତୁମେ ଯେଉଁ ଖିଡରେ ପାଣି ପିଉଛ, ତା ବି ନୂଆ କଥା । ତୁମେ ମୋର ମିତ୍ର ହେଲ । ମୁଁ ଯଦି ତୁମର କିଛି ସାହାଯ୍ୟ କରିପାରିବ, କୁହ ।"

ହାଠାତ୍ ବୁଢ଼ାମାଙ୍କଡ଼ ମୁଣ୍ଡକୁ ଗୋଟାଏ ବୁଦ୍ଧି ଜୁଟିଲା । ସେ ପଚାରିଲା, "ତୁମେ ଏକାଥରେ କେତେ ମଣିଷ ମାରିପାରିବ ?"

"ପାଣି ଭିତରେ ଯେତେ ଲୋକ ପଶିବେ ସମସ୍ତଙ୍କୁ ମାରିପାରିବି । କିନ୍ତୁ ସ୍ଥଳ ଭାଗରେ ମୋର କୌଣସି ବଳ ଖାଟିବ ନାହିଁ ।" କୁମ୍ଭୀର କହିଲା ।

"ଦେଖ ମିତ୍ର ଚନ୍ଦ୍ରଦେଶର ରାଜା ମୋ ଆତ୍ମୀୟମାନଙ୍କୁ ମାରି ମୋର ଶତ୍ରୁ ହୋଇଛି । ତୁମେ ଯଦି ତୁମ ହୀରା ହାରଟି ମୋତେ ଦିନେ ଦୁଇଦିନ ସକାଶେ ଦିଅନ୍ତ, ମୁଁ ସେମାନଙ୍କୁ ପ୍ରଲୁବ୍ଧ କରି ଏ ହ୍ରଦକୁ ନେଇଆସନ୍ତି । ତୁମେ ପ୍ରଚୁର ଖାଦ୍ୟ ପାଆନ୍ତ ।" ବୁଢ଼ାମାଙ୍କଡ଼ କହିଲା ।

କୁମ୍ଭୀର ବିନା ଦ୍ୱିଧାରେ ତା' ହୀରା ହାରଟି ବୁଢ଼ାମାଙ୍କଡ଼କୁ ଦେଲା । "ମିତ୍ର ତୁମକୁ ବିଶ୍ୱାସ କଲି । ଯେତେ ଶୀଘ୍ର ପାରିବ, ମୋତେ କିଛି ଆହାର ଆଣିଦିଅ ।" କୁମ୍ଭୀର କହିଲା ।

ବୁଢ଼ାମାଙ୍କଡ଼ ଶୀଘ୍ର ଫେରିବାର ପ୍ରତିଶ୍ରୁତି ଦେଇ ଚାଲିଗଲା । ବେକରେ ହୀରା ହାର ପକାଇ ସେ ଯାଇ ସିଧା ପହଞ୍ଚିଲା ରାଜାଙ୍କ ଉଦ୍ୟାନରେ । ସେଠାରେ ଗଛରୁ ଗଛକୁ ଡିଆଡେଇଁ କରି ରାଜାଙ୍କ ପ୍ରହରୀମାନଙ୍କର ଦୃଷ୍ଟି ଆକର୍ଷଣ କଲା ।

"ଆରେ, ଆମ ମାଙ୍କଡ଼ ନେତା ଏତେ ଦିନ ଥିଲା କୁଆଡ଼େ ?" ପ୍ରହରୀମାନେ ପଚାରିଲେ । ତା' ହୀରା ହାର ଦେଖି ସେମାନଙ୍କ କୌତୂହଳ



ଆତୁର ବଢ଼ିଗଲା । "ସୂର୍ଯ୍ୟକିରଣଠାରୁ ଅଧିକ ଦ୍ୟୁତିମାନ୍ ହାର ପାଇଲ କେଉଁଠୁ ? ସେମାନେ ପ୍ରଶ୍ନ କଲେ ।

"ବଣ ଭିତରେ ରହିଛି ଏକ ପଦ୍ମ ସରୋବର । ତାହାର ଭିତରେ କୁବେର ତାଙ୍କ ବିତ୍ତ ଲୁଚାଇ ରଖିଥାନ୍ତି । ଜାଣିତରେ ବା ଅଜାଣତରେ ଯିଏ ସେ ସରୋବରରେ ରବିବାର ଦିନ ସ୍ନାନ କରେ, ସେ କୁବେରଙ୍କ ଅତିଥି ରୂପେ ପରିଗଣିତ ହୁଏ ଓ ପାଣିରୁ ଉଠିବା ବେଳେ କୁବେର ତା' ବେକରେ ଗୋଟାଏ ହୀରା ହାର ପିନ୍ଧାଇ ଦିଅନ୍ତି ।" ବୃଦ୍ଧମାଙ୍କଡ଼ କହିଲା ।

ଏ କଥା ରାଜାଙ୍କ କାନରେ ପଡ଼ିଲା । ସେ ବୁଢ଼ା ମାଙ୍କଡ଼କୁ ଡକାଇ ପଚାରିଲେ, "ହଇହୋ ଯାହା ଶୁଣୁଛି, ତାହା କ'ଣ ସତ ?"

"ମହାରାଜ, ସତ ନ ହେଲେ ମାଙ୍କଡ଼ ବେକକୁ ବା ଏ ହୀରା ହାର ଆସନ୍ତା କିପରି ? ଆଗାମୀ କାଲି ରବିବାର । ମୋ ସହ ଆପଣଙ୍କର କେତେଜଣ ଲୋକ ପଠାନ୍ତୁ । ସେମାନେ ଏମିତି ଗୋଟାଏ ଗୋଟାଏ ହାର ପିନ୍ଧି ଆସିବେ କି ନା ଦେଖିବେ ।" ମାଙ୍କଡ଼ କହିଲା ।

ରାଜା କହିଲେ, "ନାହିଁ, ନାହିଁ, ତୁମେ ଆମର ପୁରୁଣା ବିଶ୍ୱାସୀ ମାଙ୍କଡ଼ । ତୁମକୁ ଅବିଶ୍ୱାସ କରିବି କିପରି ? ମୁଁ ଯଦି ମୋ ପରିବାର ପରିଜନଙ୍କୁ ଧରି କାଲି ଯିବି, ତେବେ କ'ଣ ସମସ୍ତଙ୍କୁ ଏହିଭଳି ହୀରା ହାର ମିଳିଯିବ ?"

"ମହାରାଜ ! ସେ ହ୍ରଦରେ ମାଛିଗୋଡ଼ଠାରୁ ହୀରା ହାରର ସଂଖ୍ୟା ଅଧିକ ।" ମାଙ୍କଡ଼ କହିଲା ।

ରାଜା ଆନନ୍ଦିତ ହୋଇ ସଙ୍ଗେ ସଙ୍ଗେ ରାଣୀମାନଙ୍କୁ ଏ ସମାଚାର ଦେଲେ ।

ପରଦିନ ରବି ଥାଏ । ରାଜା ତାଙ୍କର ସମସ୍ତ ପରିବାର ପରିଜନ ତଥା ବିଶ୍ୱସ୍ତ ଲୋକଙ୍କୁ ଧରି ହ୍ରଦ ଅଭିମୁଖେ ଚାଲିଲେ । ସେ ଦଳରେ ମାଙ୍କଡ଼ ଚର୍ବିର ଔଷଧ ଗୁଣ ବତାଇଥିବା ବୈଦ୍ୟ ମହାଶୟ ବି ଥିଲେ ।

ରାଜା ସବାରିରେ ବସିଥାନ୍ତି । ତାଙ୍କର କୋଳରେ ବସିଥାଏ ବୁଢ଼ାମାଙ୍କଡ଼ ।

"ହେ ଲୋଭ ! ତୋତେ ଜୁହାର ! ତୋ ପ୍ରଭାବରେ ବିଜ୍ଞ ବୁଦ୍ଧୁ ବନିଯାଏ, ତୀବ୍ର ଦୃଷ୍ଟି-ସମ୍ପନ୍ନ ମଣିଷ ଅନ୍ଧ ହୁଏ । କାହିଁ ରାଜା, କାହିଁ ମାଙ୍କଡ଼ ! କିନ୍ତୁ ତୋ ପାଲରେ ପଡ଼ି ରାଜା ନିଜ କୋଳରେ ବୁଢ଼ାମାଙ୍କଡ଼କୁ ବସାଇ ବୁଲିଥାନ୍ତି !"

ସେମାନେ ପ୍ରତ୍ୟୁଷରେ ଯାଇ ହ୍ରଦ କୂଳରେ ପହଞ୍ଚିଲେ । ବୁଢ଼ାମାଙ୍କଡ଼ ସମସ୍ତଙ୍କୁ ଉଦ୍ଦେଶ୍ୟ କରି କହିଲା, "ଠିକ୍ ସୂର୍ଯ୍ୟୋଦୟ ବେଳେ ସମସ୍ତେ ଏକା ଥରେ ହ୍ରଦ ଭିତରେ ପଶିବା ଦରକାର । ସେଇଟା ନିୟମ । କୁବେର ହୀରା ହାର ତ ଦେବେ, ତେବେ ରାଜାଙ୍କୁ ଆହୁରି କିଛି ବି ଯେମିତି ଦେବେ, ମୁଁ ତାଙ୍କୁ ଅନୁରୋଧ କରିବି । ତେଣୁ ରାଜା ପଛକୁ ରହନ୍ତୁ । ସେ ମୋ ସହ ଶେଷରେ ଯିବେ । କୁବେରଙ୍କ ସହ ତାଙ୍କର ବିଶେଷ ପରିଚୟ କରାଇଦେବି ।"

ସୂର୍ଯ୍ୟୋଦୟ ହେବା ମାତ୍ରେ ରାଜାଙ୍କୁ ଛାଡ଼ି ସମସ୍ତେ ଉତ୍ସାହ ଭରେ ଜଳରେ ପଶିଲେ । ବହୁ ସମୟ ବିତିଗଲା । ସେମାନେ ନ ଫେରିବାରୁ ରାଜା ବୁଢ଼ାମାଙ୍କଡ଼କୁ ପଚାରିଲେ, "ଏତେ ବିଳମ୍ବ କିଆଁ ?"

ତତ୍କ୍ଷଣାତ୍ ମାଙ୍କଡ଼ ଗଛ ଉପରକୁ ଡେଇଁ-ପଡ଼ି କହିଲା, "ରାଜା ! ତୁମର ସମସ୍ତ ଆତ୍ମୀୟ-ପରିଜନ କୁମ୍ଭୀର କବଳରେ ପଡ଼ି ନାଶ ଗଲେଣି । ତୁମେ ଆମକୁ ଆଶ୍ରୟ ଦେଇ ତା' ପରେ ବିଶ୍ୱାସଘାତକତା କରି ମାରିଲ । ତା'ର ପ୍ରତିଶୋଧ ନେଲି । ତୁମେ ଯେହେତୁ ରାଜା, ତୁମକୁ ଛାଡ଼ିଦେଲି । ତେବେ ତୁମେ ଆଜୀବନ ଶୋକାର୍ତ୍ତ ହୋଇ ରହିବ । ପଳାଅ ଏ ବଣରୁ । ମୋର ପ୍ରତିହିଂସା ବହ୍ନି ବର୍ତ୍ତମାନ ନିର୍ବାପିତ ।"

ରାଜା କପାଳରେ କର ମାରି ନଅରକୁ ଫେରିଗଲେ ।

"ବାଃ ବନ୍ଧୁ ! ବେଶ୍ କଲ । ହୀରା ହାରଟି ତୁମେ ରଖ ।" କୁମ୍ଭୀର ପାଣି ଭିତରୁ ମୁଣ୍ଡ ଟେକି କହିଲା ।






[ ୧୮ ]

[ମାୟାମର୍କଟ ଯାଇ ରାଜା ଜଡକେତୁଙ୍କୁ ଖବର ଦେଲା କି ତାଙ୍କ ଦୁର୍ଗ ଉପରକୁ ବିପଦ ମାଡ଼ିଆସୁଛି । ଆକ୍ରମଣକାରୀଙ୍କ ଭିତରେ ଜଣେ ରାକ୍ଷସ ମଧ୍ୟ ରହିଛି ବୋଲି ଖବର ପାଇ ଭୟଭୀତ ରାଜା ମାୟା-ମର୍କଟକୁହିଁ ତାଙ୍କର ମନ୍ତ୍ରୀ ରୂପେ ନିଯୁକ୍ତ କଲେ । ପୁରୁଣା ମନ୍ତ୍ରୀ ଜୀବଗୁପ୍ତ ପହଞ୍ଚିଯାଇ ମାୟାମର୍କଟ ଉପରେ ନିଜ ତରବାରି ଚଳାଇବାକୁ ଉଦ୍ୟମ ହେବା ବେଳକୁ ମର୍କଟ ତାକୁ ଛଡ଼ାଇନେଇ ଜୀବଗୁପ୍ତ ଉପରକୁ ଉଞ୍ଚାଇଲା । ତା'ପରେ···]

**ମା**ୟାମର୍କଟ ମନ୍ତ୍ରୀ ଜୀବଗୁପ୍ତଙ୍କୁ ତରବାରିରେ ଆଘାତ କରିବାକୁ ଉଦ୍ୟତ ହେବାର ଦେଖି ଦରବାରରେ ଅମାତ୍ୟମାନେ କୋଳାହଳ କରି-ଉଠିଲେ । ରାଜା ଜଡକେତୁ ଝପଟିଯାଇ ମର୍କଟର ହାତ ଧରିପକାଇ କହିଲେ, "ହେ ମର୍କଟ-ମନ୍ତ୍ରୀ ! ଅସ୍ତ୍ର ଧର । ରାଜସଭା ଭିତରେ ରକ୍ତପାତ ହେବା ଅମଙ୍ଗଳକର । ମୁଁ ଜୀବଗୁପ୍ତକୁ ପ୍ରାଣ-ଦଣ୍ଡରେ ଦଣ୍ଡିତ କରିବି । ଖାଲି ଆମ ଘାତକ ଆସିଯାଉ ।"

ରାଜାଙ୍କଠାରୁ ଏ ପ୍ରତିଶ୍ରୁତି ପାଇ ମାୟାମର୍କଟ ଶାନ୍ତ ହେଲା । ତରବାରି ଖୋପରେ ପୂରାଇ ଜୀବଗୁପ୍ତ ଆଡ଼କୁ ତାଚ୍ଛଲ୍ୟପୂର୍ଣ୍ଣ ଦୃଷ୍ଟିରେ ଅନାଇ କହିଲା, "ଶୁଣିଲୁ ? ଘାତକ ନାହିଁ ବୋଲି ବଞ୍ଚିଛୁ । ପ୍ରାଣ ପ୍ରତି ମମତା ଥିଲେ ଏହି



ସୁଯୋଗରେ ରାଜ୍ୟ ଛାଡ଼ି ପଳାଇଯା ।"

ତଳେ ପଡ଼ିଯାଇଥିବା ତରବାରି ଉଠାଇନେଇ ଜୀବଗୁପ୍ତ ତାକୁ ଖୋଳପରେ ରଖିଲା ଏବଂ ରାଜା ତଥା ମର୍କଟ ଆଡ଼କୁ ଥରେ କ୍ରୁଦ୍ଧ ଦୃଷ୍ଟି ନିକ୍ଷେପ କରି ତା'ପରେ ଅମାତ୍ୟବର୍ଗଙ୍କୁ ଉଦ୍ଦେଶ୍ୟ କରି କହିଲା, "ଶୁଣିଲେ ତ ? ରାଜା ମୋତେ ରାଜ୍ୟ ଛାଡ଼ି ଚାଲିଯିବାର ନିର୍ଦ୍ଦେଶ ଦେଉଛି । କୁହନ୍ତୁ, ଆପଣମାନଙ୍କର ପରାମର୍ଶ କ'ଣ ? ମୋର କ'ଣ କର୍ତ୍ତବ୍ୟ ?"

ଅମାତ୍ୟମାନେ କ'ଣ କହିବେ ସ୍ଥିର କରି ନ ପାରି ପରସ୍ପର ଅନାଇ ରହିଲେ । ସେତିକିବେଳେ ସାମନ୍ତରାଜା ସୂର୍ଯ୍ୟଭୂପତି ସେଠାରେ ପହଞ୍ଚିଯାଇ କହିଲା, "ମହାରାଜ ! ମୁଁ ସୂର୍ଯ୍ୟଭୂପତି । ମୋର ଅନୁରୋଧ, ଆପଣ ବର୍ତ୍ତମାନ ଅବସ୍ଥାରେ ଜୀବଗୁପ୍ତଙ୍କୁ ଦଣ୍ଡଦେବାରୁ କ୍ଷାନ୍ତ ରହି ରାଜ୍ୟରକ୍ଷା ଦିଗରେ ବ୍ୟବସ୍ଥା କରନ୍ତୁ । ଆପଣଙ୍କ ରାଜ୍ୟ ଉପରେ ଯେଉଁମାନେ ଆକ୍ରମଣ କରିବାକୁ ଆସୁଛନ୍ତି, ତହିଁ ଭିତରେ ଉଦୟଗିରିର ରାଜା ଦୁର୍ମୁଖ ବି ଅଛନ୍ତି ।"

ଦୁର୍ମୁଖର ନାମ ଶୁଣି ଜିତକେତୁ ଚମକି ପଡ଼ିଲେ । ନଗରୀର ମୁଖ୍ୟ ଦ୍ୱାରରକ୍ଷକକୁ କହିଲେ, "ଏହି ମୁହୂର୍ତ୍ତରେ ଯାଇ ନଗରୀର ପ୍ରବେଶ ପଥ ବନ୍ଦ କରିଦିଅ । ପ୍ରଧାନ ସେନାପତିଙ୍କୁ କହିଦିଅ, ସେ ସୈନ୍ୟଦଳ ଏକତ୍ର କରି ଶତ୍ରୁ କବଳରୁ ନଗରୀ ରକ୍ଷା କରିବାର ବ୍ୟବସ୍ଥା କରିବେ ।"

"ଯେ ଆଜ୍ଞା !" ଏହା କହି ଦ୍ୱାରରକ୍ଷକ ରାଜାଙ୍କୁ ଅଭିବାଦନ ଜଣାଇ ବାହାରିଗଲା ।

ରାଜା ଜିତକେତୁ ସାମନ୍ତ ସୂର୍ଯ୍ୟଭୂପତିଙ୍କୁ କହିଲେ, "ତୁମେ ଦୁର୍ମୁଖକୁ ଜାଣ ପରା ! ତା'ର ସୈନ୍ୟବଳ କିପରି ?"

ସୂର୍ଯ୍ୟଭୂପତି ଚିନ୍ତାଗ୍ରସ୍ତ ଦେଖାଗଲେ । ସେ ଟିକିଏ ଭାବି କହିଲେ, "ମହାରାଜ ! ମୁଁ ବହୁ କାଳ ରାଜା ଦୁର୍ମୁଖ ଅଧୀନରେ ସାମନ୍ତ ରାଜା ରୂପେ ରହିଥିଲି । ତାଙ୍କୁ ଅସମର୍ଥ ଠଉରାଇ ବିଦ୍ରୋହ କରି ନିଜକୁ ସ୍ୱାଧୀନ ଘୋଷଣା କରିବା

ସଙ୍ଗେ ସଙ୍ଗେ ତାଙ୍କ ରାଜଧାନୀ ବି ଅଧିକାର କରିନେଇଥିଲି, ଦୁର୍ମୁଖର ଅନେକ ସୈନ୍ୟ ବି ମୋ ସହ ସାମିଲ୍ ହୋଇଥିଲେ । " କିନ୍ତୁ ଦୁର୍ଯୋଗକୁ ରବିବର୍ମା ନାମକ ଯୋଦ୍ଧା ଯୁବା, ଭଲ୍ଲୂକତାନ୍ତ୍ରିକ, ପୁଣି ଭଲ୍ଲୂକରୂପୀ ଗୋଟାଏ ମଣିଷ ଏବଂ ବଣର ଡାକୁ—ଏସବୁ ଦୁଷ୍ଟ ଏକଜ ହୋଇ ମୋତେ ମୋ ଅଧିକୃତ ଦୁର୍ଗରୁ ତଡ଼ିଦେଲେ । ଦୁର୍ମୁଖର ଏହି ସହଚରମାନଙ୍କ ବ୍ୟତୀତ ଅଧିକ କେହି ଥିବାର ଦେଖିଲି ନାହିଁ ।"



ସୂର୍ଯ୍ୟଭୂପତିର ଏକଥା ଶୁଣି ରାଜା ଜିତକେତୁ ଉପସ୍ଥିତ ହୋଇ ମାୟାମର୍କଟକୁ କହିଲେ, "ମର୍କଟମନ୍ତ୍ରୀ ! ଯାହା ଜଣାଯାଉଛି, ଶତ୍ରୁପକ୍ଷ ସଂଖ୍ୟାରେ ପ୍ରବଳ ନୁହନ୍ତି, ତେବେ ପରାକ୍ରମରେ ପ୍ରବଳ । ନଗରୀରକ୍ଷା କଥା ଯାହାହେଉ, ଆମର ଏ ଦୁର୍ଗ କିପରି ରକ୍ଷା ପାଇବ, ତାହାହିଁ ଜରୁରୀ ସମସ୍ୟା ।"

ମାୟାମର୍କଟ ମନଦେଇ ରାଜାଙ୍କ ବକ୍ତବ୍ୟ ଶୁଣିଲା । ତା'ପରେ ଉତ୍ସାହଭରେ କହିଲା, "ମହାରାଜ ! ଦୁର୍ଗ ରକ୍ଷା ବିଷୟରେ ଆପଣ ମୋଟେ ଚିନ୍ତା କରନ୍ତୁ ନାହିଁ । ଖାଲି ସାବଧାନ ହେବାକୁ ପଡ଼ିବ । ଭଲ୍ଲୂକତାନ୍ତ୍ରିକର ଦଳ ସୂର୍ଯ୍ୟଭୂପତି ଅଧିକୃତ ଦୁର୍ଗରେ ପଶିଲେ କିପରି ଜାଣନ୍ତି ? ସେମାନେ ଉଦୟଗିରିର ଦୁର୍ଗଦ୍ୱାର ଜଳାଇଦେଲେ ।"

ରାଜା ମୁଣ୍ଡ ହଲାଇ କହିଲେ, "ସୂର୍ଯ୍ୟଭୂପତି ! ତୁମେ ତୁମ ଦୁର୍ଗଦ୍ୱାର ରକ୍ଷା ଦିଗରେ ସତର୍କତା ଅବଲମ୍ବନ କରି ନ ଥିବାରୁ ଦୁର୍ଗଟି ହରାଇଲ । ତେବେ କ୍ଷତି ସହିବା ଦ୍ୱାରା ତୁମର ଅଭିଜ୍ଞତା ହୋଇଯାଇଛି । ତେଣୁ ମୋ ଦୁର୍ଗ ରକ୍ଷାର ଦାୟିତ୍ୱ ତୁମକୁ ସମର୍ପିଦେଲି । ତୁମେ ସାଫଲ୍ୟ ସହକାରେ କାମଟି ତୁଲାଇପାରିଲେ ତୁମକୁ ମୋ ରାଜ୍ୟର ପ୍ରଧାନ ସାମନ୍ତ ରୂପେ ନିଯୁକ୍ତ ଦେବି । ସଙ୍ଗେ ସଙ୍ଗେ ଅଭିନନ୍ଦନ ବି ପାଇବ ।"

"ଆପଣଙ୍କର ଦୟା ମହାରାଜ !" ଏହା କହି ସୂର୍ଯ୍ୟଭୂପତି ଯିବାକୁ ବାହାରିଲେ । ସେତିକିବେଳେ ଉଚ୍ଚକଣ୍ଠରେ ମନ୍ତ୍ରୀ ଜୀବଗୁପ୍ତ



ପଚାରିଲା, "ମହାରାଜ ମୋ ଅବସ୍ଥା କ'ଣ ? ମୁଁ ମନ୍ତ୍ରୀ ଅଛି ନା ତଡ଼ା ଖାଇଛି ?" କିନ୍ତୁ ରାଜା ଜିତକେତୁ କିଛି କହିବା ପୂର୍ବରୁ ମାୟାମର୍କଟ ଚିତ୍କାର କରି କହିଲା, "ଆରେ ମୂଢ଼ ଭୂତମନ୍ତ୍ରୀ ! ତୋ ମୁଣ୍ଡଟି ଏପର୍ଯ୍ୟନ୍ତ ଅତୁଟ ରହିଛି, ସେଥିପାଇଁ ଭାଗ୍ୟକୁ ଧନ୍ୟବାଦ ଦେଇଥା । ମନ୍ତ୍ରୀପଦ ଯେ ହରାଇଛୁ, ସେଥିରେ ବା ସନ୍ଦେହର ଅବକାଶ କ'ଣ ?"

ଏହା ପରେ ସୂର୍ଯ୍ୟଭୂପତି ତଥା ତାଙ୍କ ପଛେ ପଛେ ଜୀବଗୁପ୍ତ ବାହାରିଗଲେ । ଅମାତ୍ୟମାନେ ବି ସେମାନଙ୍କୁ ଅନୁସରଣ କଲେ । ସମସ୍ତେ ଦରବାର ବାହାରେ ପ୍ରାଙ୍ଗଣରେ ଠୁଳ ହେବା ମାନେ ମାୟାମର୍କଟ ଡେଇଁପଡ଼ି ସମସ୍ତଙ୍କ ଆଗରେ ଯାଇ ଠିଆ ହୋଇ ହାତରେ ତରବାରି ତଥା ପଛରେ ଲାଞ୍ଜ ବୁଲାଇ ଘୋଷଣା କଲା : "ମୋ ମନ୍ତ୍ରଦଣ୍ଡ କେହି ଜଣେ ଚୋରାଇ ନେଇଛି । ଯିଏ ସେ ମନ୍ତ୍ରଦଣ୍ଡ ମୋତେ ଆଣି ସମର୍ପିଦେବ, ସେ ଏ ରାଜ୍ୟର ଅଧା ପାଇବ, ପୁଣି ରାଜକନ୍ୟାକୁ ବି ବିବାହ କରିବ ।"

ମର୍କଟର ଏ ଘୋଷଣା ଶୁଣି ସଭାସଦ୍‌ବର୍ଗ ମୁହଁ ଚାହାଁଚାହିଁ ହେଲେ । କିନ୍ତୁ ପ୍ରବଳ ଭାବରେ ହସିଲା, ମନ୍ତ୍ରୀ ଜୀବଗୁପ୍ତ । ହସ ବନ୍ଦ ହେବାରୁ କହିଲା, "ମର୍କଟକୁ ଏତକ ଜଣା ନାହିଁ ଯେ ଆମ ରାଜାଙ୍କର କନ୍ୟା ନାହିଁ କି ପୁଅ ନାହିଁ !"

ଏଥର ସମସ୍ତେ ହସିଉଠିଲେ । ପରକ୍ଷଣରେ ସେଠାରେ ରାଜା ଜିତକେତୁ ଆସି ପହଞ୍ଚିଲେ । କ୍ରୁଦ୍ଧଦୃଷ୍ଟିରେ ରାଜାଙ୍କ ଆଡ଼କୁ ଅନାଇ ମାୟାମର୍କଟ ପଚାରିଲା, "ଆପଣ କି ଧରଣର ରାଜା ? ସବୁ ରାଜାଙ୍କର ତ ପୁଅ ଝିଅ ଥା'ନ୍ତି ! ଆପଣଙ୍କର ନାହିଁ କାହିଁକି ?"

"ମର୍କଟ-ମନ୍ତ୍ରୀ ! ସେକଥା ପରେ । ବର୍ତ୍ତମାନ କୁହ, ସେ ମନ୍ତ୍ରଦଣ୍ଡ କ'ଣ ନିହାତି ଜରୁରୀ ଦରକାର ? ତା' ଭିତରେ କ'ଣ ଏପରି ଯାଦୁ ଅଛି ଯାହା ବିନା ଶତ୍ରୁର ସାମନା କରିବା ନିରାପଦ ନୁହେଁ ?" ରାଜା ଜିତକେତୁ ପଚାରିଲେ । "ମହାରାଜ ! ଆପଣ ସେ ମନ୍ତ୍ରଦଣ୍ଡର କରାମତି

ଜାଣି ନାହାନ୍ତି । ଯାହା ହାତରେ ସେ ଦଣ୍ଡଟି ରହିଥିବ, ତାହାପାଇଁ ଅସାଧ କଛି ନାହିଁ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଖାଲି ଆପଣଙ୍କ ସିଂହାସନ କାହିଁକି, ସେ ମନ୍ତ୍ରଦଣ୍ଡ ପାଖରେ ରହିଥିଲେ ଆପଣଙ୍କ ଜୀବନ ମଧ୍ୟ ନିରାପଦ ।" ମର୍କଟ ଉତ୍ତର ଦେଲା ।

ରାଜା ଜତକେତୁ ତତ୍‌କ୍ଷଣାତ୍ ହାତ ଉପରକୁ ଉଠାଇ ଘୋଷଣା କଲା ଭଙ୍ଗିରେ କହିଲେ, "ଶୁଣ ମୋର ସଭାଜନେ, ମୋର କନ୍ୟା ନାହିଁ ତ କ'ଣ ହେଲା ? ମୁଁ ଗୋଟାଏ କନ୍ୟା ପୋଷଣ କରି ତା'ପରେ ମନ୍ତ୍ରଦଣ୍ଡ-ଉଦ୍ଧାରକାରୀ ସହ ତା'ର ବିବାହ ଦେବି ।"

ରାଜାଙ୍କ ଘୋଷଣା ଶୁଣି ସେଠାରେ ଗୁଞ୍ଜନ ଖେଳିଗଲା । ଟିକଏ ଦୂରରେ ସେ ଯାଯାବର ପୋଷା ଭାଲୁକୁ ଦେଖିବା ପାଇଁ ଥୋକେ ଲୋକ ଜମା ହୋଇଥିଲେ । ସେମାନଙ୍କ ଭିତରେ ବୈରାଗୀ ବେଶରେ ଦୁଇଜଣ ଯୁବକ ଥିଲେ । ରାଜାଙ୍କ ଘୋଷଣା ଶୁଣି ସେମାନେ ଖୁବ୍ ଖୁସୀ ହେଲେ ବୋଲି ମନେ ହେଲା । ସେମାନଙ୍କ ଭିତରୁ ଜଣେ ସଙ୍ଗେ ସଙ୍ଗେ ନିଜ ଥଳି ଭିତରେ ହାତ ପୂରାଇବାରୁ ଅନ୍ୟ ଜଣକ ତାକୁ ସତର୍କ କରିଦେଇ କହିଲା, "ବ୍ୟସ୍ତ କାହିଁକି ? ପ୍ରଥମେ ଆମ ଗୁରୁଙ୍କ ମତ କ'ଣ ବୁଝିଯାଉ ।"

ଦୁଇ ବୈରାଗୀ ଯୁବକ ସେଠାରୁ ଚାଲିଗଲେ । ଉପସ୍ଥିତ ଅମାତ୍ୟମାନେ ରାଜାଙ୍କୁ କହିଲେ କି ମନ୍ତ୍ରଦଣ୍ଡ ଉଦ୍ଧାରକାରୀକୁ ଯେଉଁ ପୁରସ୍କାର ମିଳିବ





ତା'ପରେ ସେ ପୁଣି ପାଗଳ ପରି ନାଚ କୁଦ ପକାଇଲା, "ଆରେ, କାହିଁ ଗଲା ମୋର ମନ୍ତ୍ର-ଦଣ୍ଡ ?"

ସେ ଏତକ କହିସାରିବା ବେଳକୁ ଖଣ୍ଡିଏ ଓଜନିଆ ପଥର କାହିଁ ଆସି ପାଚେରି ଉପରେ ପଡ଼ି ତା'ପରେ ତଳକୁ ଛିଟିକିଆସି ଖଣ୍ଡବିଖଣ୍ଡ ହୋଇଗଲା ।

ରାଜା ଜତକେତୁ ଏଥର ଚମକିଉଠିଲେ । ଭୟରେ ଥରି ଥରି ସେ କହିଲେ, "ଏଡ଼େ ବଡ଼ ପ୍ରଥର ଯିଏ ଟେକି ଫୋପାଡ଼ ପାରୁଛି, ସିଏ କଦାପି ସାଧାରଣ ମଣିଷ ନୁହେଁ । ରାକ୍ଷସ ହେଲେ ହୋଇଥିବ । ମର୍କଟ-ମନ୍ତ୍ରୀ ! ଆମ ଭଳି ମଣିଷ ରାକ୍ଷସ ସହ ଲଢ଼ିବ କପରି ?"

ସେ ବିଷୟ ସାରା ରାଜ୍ୟରେ ଘୋଷଣା କରି-ଦିଆଯାଉ ।

ଏହାପରେ ସମସ୍ତେ ଚାଲିଯିବାକୁ ଉଦ୍ୟତ ହେଉଛନ୍ତି, ହଠାତ୍ ଗୋଟାଏ ଶର ଆସି ପ୍ରାଚୀର ଟପି ସମସ୍ତଙ୍କ ମଝିରେ ମାଟିରେ ଲାଖି-ଗଲା । କେତେଜଣ ସେ ଶର ଉଠାଇବାକୁ ଯିବାର ଦେଖି ମାୟାମର୍କଟ ସେମାନଙ୍କୁ ନିରସ୍ତ କଲା ଓ ନିଜେ ଯାଇ ଶରଟିକୁ ଧରି ଭଲ ଭାବରେ ପରୀକ୍ଷା କଲା । ତା'ପରେ ତାକୁ ଦୁଇ-ଖଣ୍ଡ କରି ଫୋପାଡ଼ ଦେଇ ଗର୍ବିତ ସ୍ୱରରେ କହିଲା, "ଏ ଶରର ଦଶା ଯାହା ହେଲା, ଶତ୍ରୁପକ୍ଷର ଦଶା ବି ସେଇଆ ହେବ ।"

ପଥର ପଡ଼ି ଭାଙ୍ଗିବା ମାତ୍ରେ ଉପସ୍ଥିତ ଲୋକେ ସେଠାରୁ ପଳାଇବାକୁ ଲାଗିଲେ । ମାୟାମର୍କଟ ରାଜାଙ୍କୁ କହିଲା, "ଆପଣ ଭୟ କରନ୍ତୁ ନାହିଁ । ବ୍ରହ୍ମପୁତ୍ର ନଦୀ କୂଳରେ ବହୁ ବଡ଼ ବଡ଼ ରାକ୍ଷସଙ୍କୁ ମୋ ଗୁରୁ ମିଥ୍ୟାମିଶ୍ର ବନ୍ଦୀ କରି ନିଜ କାମରେ ଖଟାଉଛନ୍ତି ।"

ରାଜାଙ୍କ ମୁହଁରୁ ଭୟର ଭାବ ଦୂର ହେଲା ନାହିଁ । ସେ କହିଲେ, "ଅମାତ୍ୟବର ! ତୁମେ ସେ ରାକ୍ଷସମାନଙ୍କୁ ଆଣି ବର୍ତ୍ତମାନ ଆକ୍ରମଣ-କାରୀଙ୍କ ବିରୁଦ୍ଧରେ ଲଗାଇପାରିବ କି ?"

ମାୟାମର୍କଟ ଅଳ୍ପ ହସି କହିଲା, "ମହାରାଜ !

ଆପଣ ମୋ ଗୁରୁଙ୍କ ଉଦ୍ଦେଶ୍ୟ ବିଷୟରେ କିଛି ଜାଣିଥିଲେ ଏପରି ପିଲାଳିଆ କଥା କୁହନ୍ତେ ନାହିଁ । ସେ ତାନ୍ତ୍ରିକ-ସାର୍ବଭୌମ । ସେ ଏ ମର୍ତ୍ତ୍ୟଲୋକ ଉପରେ ନଜର ପ୍ରଭୁପତ୍ତି ସାବ୍ୟସ୍ତ କରିସାରି ସ୍ୱର୍ଗଲୋକ ଉପରେ ପ୍ରଭୁପତ୍ତି ବିସ୍ତାର କରିବା ମତଲବ୍‌ରେ ଅଛନ୍ତି । ସେ ପୁଣି ଆପଣଙ୍କ ଭଳି ଟେଣ୍ଟିଆ ମୋଟିଆ ରାଜାଙ୍କ ସହାୟତା କରିବା ପାଇଁ ଆସିବେ ! ସେ ଅବଶ୍ୟ ବର୍ତ୍ତମାନ ଟିକିଏ ଅଡ଼ୁଆରେ ପଡ଼ିଯାଇଛନ୍ତି । କାରଣ ଭଲ୍ଲୁକପାଦ ନାମକ ସାମାନ୍ୟ ମଣିଷଟାଏ ତାଙ୍କର ଶତ୍ରୁତା କରୁଛି । ତାହାର ଶିଷ୍ୟ ଭଲ୍ଲୁକତାନ୍ତ୍ରିକ ଆଜି ଆପଣଙ୍କ ଉପରେ ଚଢ଼ଉ କରୁଛି ।"

ମାୟାମର୍କଟ ମୁହଁରୁ ଏହା ଶୁଣି ରାଜା ଜିତକେତୁ ଚିନ୍ତାରେ ପଡ଼ିଲେ । ମାୟାମର୍କଟ ପ୍ରକୃତରେ ତାଙ୍କୁ ସହାୟତା କରିବାକୁ ପ୍ରସ୍ତୁତ ନା ତା' ଗୁରୁର କୌଣସି କାର୍ଯ୍ୟ ସିଦ୍ଧି ଉଦ୍ଦେଶ୍ୟରେ ତାଙ୍କୁ ବ୍ୟବହାର କରିବା ମତଲବ୍‌ରେ ଅଛି ? ତାଙ୍କ ମନରେ ଦେଖା ଦେଲା ଏହି ସନ୍ଦେହ । ଦୁର୍ଗରକ୍ଷାର ଦାୟିତ୍ୱ ମାୟାମର୍କଟ ଉପରେ ନ୍ୟସ୍ତ କରିବା କେତେଦୂର ସମୀଚୀନ ହୋଇଛି ତାହା ସେ ଠଉରାଇ ପାରିଲେ ନାହିଁ ।

ସେ ମର୍କଟକୁ କହିଲେ, "ଅମାତ୍ୟବର ! ପ୍ରଥମେ ଦୁର୍ଗର ପ୍ରାଚୀର ଉପରୁ ଶତ୍ରୁଦଳକୁ ଦୃଷ୍ଟିନିକ୍ଷେପ କରିବା ଆବଶ୍ୟକ । ତାହାହେଲେ



ଶତ୍ରୁ କେତେ ଦୂରରେ, ସେ କଥା ବୁଝିହେବ । ସେହି ଅନୁସାରେ ଆମ ସୈନ୍ୟଦଳକୁ ସଙ୍କେତ ଦେଇହେବ ।"

ରାଜା ନିକଟସ୍ଥ ପ୍ରାଚୀର-ତୋରଣ ଆଡ଼କୁ ଅଗ୍ରସର ହେବାକୁ ଲାଗିଲେ ।

"ହାୟ, ମୋ ମନ୍ତ୍ରଦଣ୍ଡ ଗଲା କୁଆଡ଼େ ?" ଏଇଆ କହି ମର୍କଟ ତାଙ୍କୁ ଅନୁସରଣ କରିବାକୁ ଲାଗିଲା ।

ତୋରଣ ଉପରୁ ରାଜା ଜିତକେତୁ ଓ ମାୟାମର୍କଟ ସମ୍ମୁଖବର୍ତ୍ତୀ ମୈଦାନ ଭିତରକୁ ଅନାଇଲେ । ସେମାନେ ଅଳ୍ପଦୂରରେ ଘୋଡ଼ା ଉପରେ ରବିବର୍ମା, ମହିଷ ଉପରେ ଉଲ୍ଲୂକ-ତାନ୍ତ୍ରିକ, ହାତୀ ଉପରେ ଘାତକଭଲ୍ଲୂକ ଏବଂ ସେମାନଙ୍କ ସହିତ ରାକ୍ଷସ ଉଗ୍ରଦଣ୍ଡ ଓ କେତେଜଣ ସୈନ୍ୟ ଠିଆ ହୋଇଥିବାର ଦେଖିଲେ ।

ଆପାଦମସ୍ତକ ଥରଉଠି ରାଜା ଜିତକେତୁ କହିଲେ, "ମର୍କଟ-ମନ୍ତ୍ରୀ ! ମୋତେ ସତରେ ଡର ଲାଗୁଛି । ଅନ୍ୟମାନେ ମଣିଷ । ସେମାନଙ୍କ ସହ ଲଢ଼ିବାକୁ ମୁଁ ପ୍ରସ୍ତୁତ । କିନ୍ତୁ ଆମେ କୌଣସି କାଳେ ରାକ୍ଷସ ସହ ଯୁଝିନାହୁଁ । ବର୍ତ୍ତମାନ କର୍ତ୍ତବ୍ୟ କ'ଣ ?"

"ଯାହା ମଣିଷର ସାଧାରଣ ଶକ୍ତିର ଦ୍ୱାରା ଅସାଧ୍ୟ ତାହା ମନ୍ତ୍ରଶକ୍ତି ଦ୍ୱାରା ସମ୍ଭବ । ହାୟ, କୁଆଡ଼େ ଗଲା ମୋର ମନ୍ତ୍ରଦଣ୍ଡ ?" ଏହା କହି ମାୟାମର୍କଟ ଗୋଟାଏ ରଡ଼ି ଛାଡ଼ିଲା ।

ସେ ରଡ଼ି ବଣୁଆ ଟୋକା କାନରେ ପଡ଼ିଲା । ସେ ହାତୀ ଉପରେ ଠିଆ ହୋଇପଡ଼ି ତା' ଆଡ଼କୁ ଲକ୍ଷ୍ୟ କରି କହିଲା, "ଆରେ ମର୍କଟ, ତୋ ମନ୍ତ୍ରଦଣ୍ଡ ବର୍ତ୍ତମାନ ଶର ରୂପେ ତୋତେ ଭେଟିବାକୁ ଯାଉଛି ।" ଏହା କହି ସେ ଶର ନିକ୍ଷେପ କଲା ।

ଶର ଆସି ମର୍କଟ ଦେହରେ ଲାଗିଲା । ସେ ପଡ଼ିଗଲା କିନ୍ତୁ ଉଠିପଡ଼ି ଦୁଇ ହାତରେ ଶର ବାହାର କରି ଉଚ୍ଚ କଣ୍ଠରେ କହିଲା, "ତୁମର ଏ ସାମାନ୍ୟ ଶର ଭ୍ରାନ୍ତିମନ୍ତର କ'ଣ ଅନିଷ୍ଟ କରି ପାରେ ?"

ଏହା କହି ସେ ରବିବର୍ମା ଆଡ଼କୁ ଲକ୍ଷ୍ୟ କରି ଶରଟି ଫୋପାଡ଼ିଦେଲା । (କ୍ରମଶଃ)






# ବିଚିତ୍ର-ବ୍ୟବହାର

ରାଜା ବିକ୍ରମାର୍କ ପୁନର୍ବାର ବୃକ୍ଷଟି ପାଖକୁ ଲେଉଟି ଆସିଲେ । ବର୍ଷା, ଘନ ଘନ ବଜ୍ରପାତ ତଥା ବିଜୁଳି ଆଲୁଅରେ ଦିଶିଯାଉଥିବା ଅଶରୀରୀମାନଙ୍କର ଭୟାବହ ମୁହଁ ଏବଂ ଅଟ୍ଟହାସ୍ୟ ପ୍ରତି ଭ୍ରୂକ୍ଷେପ ନ କରି ରାଜା ବୃକ୍ଷାରୋହଣ କଲେ । କିନ୍ତୁ ସେ ଶବଟିକୁ ଉତାରି ଆଣି ଶ୍ମଶାନପଥ ଅତିକ୍ରମ କରିବାକୁ ଉଦ୍ୟତ ହେବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା ! ତୁମ କାର୍ଯ୍ୟକଳାପରେ ସଂଗତି ରହୁନାହିଁ । ଦିନଯାକ ଶାସନ କାର୍ଯ୍ୟରେ ବ୍ୟସ୍ତ ରହି ରାତିରେ କାହିଁ ବିଶ୍ରାମ ନେବା କଥା, ତାହା ନ କରି ତୁମେ ଆସି ଶ୍ମଶାନରେ ବୁଲୁଛ । ଚନ୍ଦ୍ରଗିରିର ରାଜା ଶଶାଙ୍କସିଂହଙ୍କ ଆଚରଣରେ ସଂଗତି ନ ଥିଲା । ଜଣେ ସାମାନ୍ୟ ବଣୁଆ କାଠୁରିଆ ତାଙ୍କୁ ଅପମାନ କଲା, ସିଏ ତାକୁ ସହିଗଲେ । ଅଥଚ ଯେଉଁ ପଣ୍ଡିତଙ୍କୁ ସେ ସମ୍ମାନ ଦେଉଥିଲେ, ସେ ଟିକିଏ ଅପମାନ ସୂଚକ କଥା

ବେତାଳ କଥା



କହିବା ମାତ୍ରେ ରାଜା ବୁଦ୍ଧୁ ହେଲେ । କହୁଛି ତାଙ୍କ କଥା । ଶୁଣ । ଶୁଣିଲେ ଶ୍ରମଭାର ଲାଘବ ମନେ ହେବ ।"

ବେତାଳ ଗପିଚାଲିଲା : ରାଜା ଶଶାଙ୍କସିଂହଙ୍କ ଦରବାରରେ କେତେଜଣ ପଣ୍ଡିତ ଥିଲେ । ସେମାନଙ୍କ ଭିତରେ ଧନଞ୍ଜୟ ଶର୍ମାଙ୍କ ପ୍ରତି ରାଜା ସବୁଠାରୁ ବେଶୀ ସମ୍ମାନ ଦେଖାଉଥିଲେ । ସେଥିପାଇଁ ଶର୍ମାଙ୍କ ମନରେ ବି ବେଶ୍ ଗର୍ବ ଥିଲା ।

ଥରେ ଥରେ ରାଜା ଛଦ୍ମବେଶରେ ରାଜ୍ୟ ବୁଲି ବାହାରୁଥିଲେ । ସେପରି ଭାବରେ ବୁଲାବୁଲି କଲାବେଳେ ଥରେଅଧେ ସେ ରାତିରେ ମଧ୍ୟ ବାହାରେ ରହିଯାଉଥିଲେ ।

ଥରେ ରାତି କାଳରେ ରାଜା ସାଙ୍ଗମାନଙ୍କଠାରୁ ବହୁ ଦୂରରେ ଥାଇ ଦୁର୍ଜନମାନଙ୍କ କବଳରେ ପଡ଼ିଲେ । ଜଣେ ବଣୁଆ କାଠୁରିଆ ତାଙ୍କୁ ବିପଦରୁ ରକ୍ଷା କଲା ।

ପରଦିନ ରାଜା କାଠୁରିଆକୁ ଦରବାରକୁ ଡକାଇପଠାଇଲେ । କାଠୁରିଆ ବା କିପରି ଜାଣିଥାନ୍ତା ଯେ ସେ ଯାହାକୁ ରକ୍ଷା କଲା ସେ ସ୍ୱୟଂ ରାଜା । ଦରବାରରୁ ଡାକରା ପାଇ ସେ ଆଶ୍ଚର୍ଯ୍ୟ ହୋଇଯାଇଥାଏ । ଦରବାର ଭିତରକୁ ଆସି ରାଜାଙ୍କୁ ସେ ତାଟକା ହୋଇ ଅନାଇରହିଲା ।

"କିହୋ ! ମୋତେ ଚିହ୍ନି ପାରୁନାହଁ ? ଗତ କାଲି ରାତିରେ ମୋତେ ତୁମେ ବିପଦରୁ ରକ୍ଷା କରି ନ ଥିଲ ?" ରାଜା ପଚାରିଲେ ।

"ଆରେ, ଆରେ, ତୁମେ ରାଜା ! ହାଇହୋ, ତୁମେ ନିଜକୁ ନିଜେ ରକ୍ଷା କରିବାକୁ ଅକ୍ଷମ, ଆଉ ସିଂହାସନରେ ବସି ଆମକୁ ଶାସନ କରୁଛ କ'ଣ !" କାଠୁରିଆ କହିଦେଲା ।

ଦରବାରର ଅମାତ୍ୟମାନେ ନିସ୍ତବ୍ଧ ହୋଇଗଲେ । ସେମାନେ ଭାବିବାକୁ ଲାଗିଲେ କାଠୁରିଆ ବାପୁଡ଼ାର ପ୍ରାଣ ଗଲା ।

କିନ୍ତୁ ରାଜା ହସିଲେ ଓ କହିଲେ, "ଆରେ ଭାଇ ତୁମେ ଠିକ୍ କହୁଛ । ପରିସ୍ଥିତିରେ ବଳବାନ୍ ଲୋକ ବି କାବୁ ହୋଇଯାଏ । ମୋର ସେଇଆ ହୋଇଗଲା । ତେବେ ମୁଁ ବିପଦରେ ପଡ଼ିଲି ବୋଲି ତ ତୁମେ ମୋତେ ରକ୍ଷା କରିବାର ସୁଯୋଗ ପାଇଲ ! ରାଜାଙ୍କୁ ବଞ୍ଚାଇବାର ଗୌରବ କେତେଜଣଙ୍କୁ ମିଳେ ?"

ଏହା କହି ରାଜା କାଠୁରିଆକୁ ହଜାରେ ସ୍ୱର୍ଣ୍ଣମୁଦ୍ରା ଦେଲେ । କାଠୁରିଆ ଗୋଟାଏ ସ୍ୱର୍ଣ୍ଣମୁଦ୍ରା ବି ଜୀବନରେ ଦେଖି ନ ଥିଲା । ସେ ଅଭିଭୂତ ହୋଇଗଲା । ତେବେ କହିଲା, "ଶୁଣ ରଜା ! ଭବିଷ୍ୟତରେ ସାବଧାନରେ ବୁଲିବୁଲି କରିବ ସବୁବେଳେ ତ ମୁଁ ଆଉ ତୁମ ପାଖରେ ନ ଥିବି !"

କାଠୁରିଆର ଉପଦେଶ ଶୁଣି ରାଜା ପୁଣି ହସିଲେ ଓ କହିଲେ, "ଠିକ୍ କହିଲ । ମୋର ଅଧିକ ସତର୍କ ହେବା ଉଚିତ ।"

ଧନଞ୍ଜୟ ଶର୍ମା ସବୁ ଦେଖି ଓ ଶୁଣି ଆଶ୍ଚର୍ଯ୍ୟ ହେଲେ । ସାମାନ୍ୟ ବଣୁଆ ମୂର୍ଖଟାଏ ରାଜାଙ୍କୁ ଏପରି କଥା କହିଗଲା, ଓ ରାଜା ସେଥିରେ ବିରକ୍ତ ହେବା ପରିବର୍ତ୍ତେ ଖୁସୀ ହେଲେ । ରାଜାଙ୍କର ବୋଧହୁଏ ମାନସମ୍ମାନ ବୋଧ ବେଶୀ ଥିଲା ନୁହେଁ । ତେଣୁ ତାଙ୍କ ପରି ଜ୍ଞାନୀ ବ୍ୟକ୍ତିଙ୍କର ସମ୍ଭ୍ରମ ଦେଖାଇବାର ଆବଶ୍ୟକତା ବା କାହିଁ ?

କେତେଦିନ ଗଲା । ଦିନେ ଦରବାରରେ କୌଣସି ବିଷୟରେ ଆଲୋଚନା ହେଲାବେଳେ ରାଜା ଗୋଟାଏ ପ୍ରଶ୍ନ କରନ୍ତେ ତା'ର ସିଧା ଉତ୍ତର ନ ଦେଇ ଶର୍ମା କହିଲେ, "ମହାରାଜ ! ଏଭଳି ପ୍ରଶ୍ନ ମୂର୍ଖଠାରୁହିଁ ଆଶା କରାଯାଏ । ଭବିଷ୍ୟତରେ ଭାବିଚିନ୍ତି କଥାବାର୍ତ୍ତା କରିବେ । ସବୁବେଳେ ମୁଁ ନ ଥିବି ଯେ ଆପଣଙ୍କ ପ୍ରଶ୍ନର ଗୁଣାଗୁଣ ବିଚାର ନ କରି ଉତ୍ତର ଦେଉଥିବି !"

ରାଜାଙ୍କ ମୁଖ ଭୀଷଣ ଗମ୍ଭୀର ଦେଖାଗଲା । ସେ ସିଂହାସନରୁ ଉଠି ଚାଲିଗଲେ । ଅଧଘଣ୍ଟାଏ ଭିତରେ ମନ୍ତ୍ରୀ ଆସି ପଣ୍ଡିତଙ୍କୁ ଦରବାରରୁ ବାହାର କରିଦେଲେ । ସେ ଆଉ ଜୀବନରେ



ରାଜଧାନୀ ଭିତରେ ପ୍ରବେଶ କରି ପାରିବେ ନାହିଁ ବୋଲି ତାଙ୍କୁ କହିଦିଆଗଲା ।

ବେତାଳ ଟିକିଏ ରହିଯାଇ ପ୍ରଶ୍ନ କଲା, "ରାଜା ! ଶଶାଙ୍କସିଂହର ଆଚରଣରେ ଏଭଳି ବ୍ୟତିକ୍ରମର ତାତ୍ପର୍ଯ୍ୟ କ'ଣ ? ବଣୁଆ କାଠୁରିଆ ପ୍ରତି ସେ ପ୍ରୀତିଭାବ ଦେଖାଇଲେ ଅଥଚ ଏକା ଧରଣର କଥା ଶୁଣି ଜଣେ ଗୁଣୀ ପଣ୍ଡିତଙ୍କୁ ନିକାଲିଦେଲେ କିପରି ? ଏହା ତାଙ୍କ ବୁଦ୍ଧିର ଭ୍ରମ ଛଡ଼ା ଆଉ କ'ଣ ? ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତି ଥାଇ ଯଦି ନୀରବ ରହିବ, ତେବେ ତୁମ ଶିର ହେବ ସ୍କନ୍ଧଚ୍ୟୁତ ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନ କରି ରାଜା ବିକ୍ରମାର୍କ କହିଲେ, "ପ୍ରଥମ କଥା ହେଲା, କାଠୁରିଆ ପ୍ରତି ରାଜାଙ୍କର କୃତଜ୍ଞତାର ହେତୁ ଥିଲା । ଅପର ପକ୍ଷରେ ଶର୍ମା ରାଜାଙ୍କ ପ୍ରତି କୃତଜ୍ଞ ରହିବା କଥା । ରାଜାଙ୍କ ପ୍ରତି ଉଭୟଙ୍କର ବ୍ୟବହାର ଏକା ହେଲେ ବି ରାଜାଙ୍କ ଭିତରେ ପ୍ରତିକ୍ରିୟା ଅଲଗା ଅଲଗା ହେବା ସ୍ୱାଭାବିକ । ଦ୍ୱିତୀୟରେ କାଠୁରିଆ ରାଜାଙ୍କ ପ୍ରାଣ ବଞ୍ଚାଇଥିଲା । ଯିଏ ପ୍ରାଣ ବଞ୍ଚାଏ, ସିଏ ପିତା ସମାନ । ତା'ର ଆକଟ କରି କହିବାର ଅଧିକାର ରହିଛି ।

ଏସବୁ କାରଣ ବ୍ୟତୀତ, ଆମେ ଭୁଲିଗଲେ ଚଳିବ ନାହିଁ ଯେ କାଠୁରିଆ ଯାହା କହିଲା, ତାହା ସରଳ ଭାବରେ କହିଲା । ନିଜର ଜୀବନ ଯାପନ ଅନୁରୂପ ତା'ର କଥାବାର୍ତ୍ତା । ତେଣୁ ତା' ପାଟିରେ ଯାହା ସ୍ୱାଭାବିକ, ଦରବାରର ଆଦବ କାଇଦା ଓ ପରମ୍ପରା ଜାଣିଥିବା ଶର୍ମାଙ୍କ ପକ୍ଷରେ ତାହା ଔଦ୍ଧତ୍ୟ । ପୁଣି, କାଠୁରିଆର ଧମକ ପଛରେ ରାଜାଙ୍କ ପ୍ରତି ସଦିଚ୍ଛା ଥିଲା, ଶର୍ମାଙ୍କ ଧମକ ପଛରେ ଥିଲା ଆତ୍ମବଡ଼ିମା । ରାଜା ଯଦି ଶର୍ମାଙ୍କୁ ସହ୍ୟ କରିଥାନ୍ତେ, ଦରବାରରେ ତାଙ୍କୁ ଆଉ କେହି ସମ୍ମାନ କରି କଥା କହନ୍ତେ ନାହିଁ । ତେଣୁ ଶଶାଙ୍କସିଂହଙ୍କ ବ୍ୟବହାରରେ କୌଣସି ଅସଙ୍ଗତି ନ ଥିଲା ।"

ରାଜାଙ୍କ ମୌନଭଙ୍ଗ ହେବା ମାତ୍ରେ ଶବ ସହ ବେତାଳ ତାଙ୍କ କାନ୍ଧରୁ ଖସି ପୁନର୍ବାର ବୃକ୍ଷ ଡାଳରେ ଝୁଲିପଡ଼ିଲା । (କଳ୍ପିତ)





# ଅଦ୍ଭୁତ ଗାୟକ

ପ୍ରାଚୀନ କାଳର କଥା । ସେତେବେଳେ ସିନ୍ଧୁଦେଶ ଉପରେ ରାଜୁତି କରୁଥିଲେ ଜୟସିଂହ । ଦିନେ ତାଙ୍କ ଦରବାରକୁ ଆସିଲେ ଜଣେ ଭଦ୍ରଲୋକ । "ମହାରାଜ ! ମୋତେ ଆପଣଙ୍କ ଦରବାରରେ ଜଣେ ଗାୟକ ରୂପେ ନିଯୁକ୍ତ କରନ୍ତୁ ।"

"ଭଦ୍ର ! ଆମ ଦରବାରରେ ବର୍ତ୍ତମାନ ବେଶ୍ କେତେଜଣ ଗାୟକ ଅଛନ୍ତି । ଆଉ ଅଧିକ ଦରବାରୀ ଗାୟକ ଦରକାର ନାହିଁ ।" ରାଜା ଉତ୍ତର ଦେଲେ ।

ଆଗନ୍ତୁକ ଚାଲିଗଲେ । ପରଦିନ ସେ ପୁଣି ଆସି ପହଞ୍ଚି ସେହି ଏକା ଅନୁରୋଧ କଲେ ।

"ଆପଣଙ୍କୁ ପରା କହିଲି, ମୋ ଦରବାରରେ ଅନେକ ଗାୟକ ଅଛନ୍ତି ! ଆଉ ଲୋଡ଼ା ନାହିଁ । ଆପଣ ଯାଆନ୍ତୁ ।" ରାଜା କହିଲେ ।

ଗାୟକ ଚାଲିଗଲେ । କିନ୍ତୁ ସେ ପ୍ରତିଦିନ ଦରବାରକୁ ଆସି ଗମ୍ଭୀର ଭାବରେ ସେହି ଏକା ଅନୁରୋଧ କରନ୍ତି । ରାଜା ସେ ଅନୁରୋଧ ପ୍ରତ୍ୟାଖ୍ୟାନ କରିଦିଅନ୍ତି ।

ଦିନେ ରାଜା ଭାବିଲେ, "ଲୋକଟିର ଧୈର୍ଯ୍ୟ ତ କମ୍ ନୁହେଁ ! ମୁଁ ମନା କରିବା ସତ୍ତ୍ୱେ ସେ ପ୍ରତିଦିନ ଅବିଚଳିତ ଭାବରେ ଆସି ସେହି ଗୋଟିଏ ନିବେଦନ କରୁଛି । ହୁଏତ ଏହା ଭିତରେ କିଛି ରହସ୍ୟ ରହିଛି । ମୁଁ ସବୁଦିନେ ତାକୁ ପ୍ରତ୍ୟାଖ୍ୟାନ କରିବା ଅସୁନ୍ଦର ।"

ପରଦିନ ସେ ଲୋକ ଆସିବା ମାତ୍ରେ ରାଜା କହିଲେ, "ଆପଣ ମୋ ଦରବାରର ଓସ୍ତାଦ୍-ମାନଙ୍କୁ ଗୀତ ବୋଲି ଶୁଣାନ୍ତୁ । ସେମାନେ ଯଦି ସନ୍ତୁଷ୍ଟ ହେବେ, ତେବେ ଆପଣଙ୍କୁ ଦର-ବାରୀ ଗାୟକ ରୂପେ ନିଯୁକ୍ତ କରିବି ।"

"ମହାରାଜ, ମୋର ଗୋଟିଏ ସର୍ତ୍ତ ଅଛି । ମୁଁ କାହାର ବରାଦରେ ଗୀତ ବୋଲିପାରିବି ନାହିଁ । ଯେତେବେଳେ ମୋ ନିଜ ଭିତରୁ ପ୍ରେରଣା ପାଇବି, ସେତିକବେଳେ ବୋଲିବି । ଆପଣ ଯଦି ମୋର ଏ ସର୍ତ୍ତ ଗ୍ରହଣ କରିବେ, ତେବେ ମୁଁ ଦରବାରୀଗାୟକ ପଦ ଗ୍ରହଣ କରିବି ।" ଭଦ୍ରଲୋକ ଅତ୍ୟନ୍ତ ବିନମ୍ର ଭାବରେ କହିଲେ ।

"ହଇହୋ ବାବୁ, ତୁମେ ବାରମ୍ବାର ଅନୁରୋଧ କରିବାରୁ ତୁମକୁ ଏ ସୁଯୋଗ ଦିଆଗଲା । ତୁମେ ପୁଣି ଏପରି ଅଦ୍ଭୁତ ସର୍ତ୍ତ ବାଢ଼ୁଛ କିପରି ? ନା, ଚଳିବ ନାହିଁ । ତୁମେ ଯାଇପାର ।" ରାଜା କହିଲେ ।

ଭଦ୍ରଲୋକ ଚାଲିଗଲେ । ତାଙ୍କ ପଛରେ ସମସ୍ତେ ହସିଲେ । କିନ୍ତୁ ସେ ପୁଣି ପରଦିନ ଆସି ସେହି ଏକା ନିବେଦନ କଲେ । ରାଜା ବି ପ୍ରତ୍ୟାଖ୍ୟାନ କଲେ । ପୁଣି କିଛିଦିନ ବିତିଗଲା ।

ଦିନେ ରାଜା ସ୍ୱୟଂ ଭାବିଲେ, "ଭଦ୍ରଲୋକଙ୍କ ବ୍ୟବହାର ରହସ୍ୟମୟ । ଦେଖାଯାଉ ତାଙ୍କ ମନରେ କ'ଣ ରହିଛି ।"

ପରଦିନ ଭଦ୍ରଲୋକ ଆସିବା ମାତ୍ରେ ରାଜା କହିଲେ, "ଆସନ୍ତୁ । ଆଜିଠାରୁ ଆପଣ ମୋର ଦରବାରୀଗାୟକ ନିଯୁକ୍ତ ହେଲେ ।"

ଏହା କହି ରାଜା ତାଙ୍କ ଦରମା ଏବଂ ରହିବା ଇତ୍ୟାଦି ସମ୍ପର୍କରେ ଯଥାବିଧି ବ୍ୟବସ୍ଥା କରିଦେଲେ ।

ସଭାସଦ୍‌ବର୍ଗ ରାଜାଙ୍କର ଏଭଳି ସିଦ୍ଧାନ୍ତ ଶୁଣି ଆଶ୍ଚର୍ଯ୍ୟ ହୋଇଗଲେ । କିନ୍ତୁ ଭଦ୍ରଲୋକ କିଛି ଆଶ୍ଚର୍ଯ୍ୟ ବା ଆନନ୍ଦିତ ହେବାର ଜଣାପଡ଼ିଲା ନାହିଁ । ଅନ୍ୟମାନେ ଧରିନେଲେ ତାଙ୍କ ଭିତରେ



କୌଣସି ଅସାଧାରଣ ପ୍ରତିଭା ଅଛି ଏବଂ ଏକମାତ୍ର ରାଜା ତାହା ଜାଣନ୍ତି ।

କିଛିଦିନ ପରେ ରାଜାଙ୍କର ଗୋଟିଏ ପୁଅ ହେଲା । ସେ ଉପଲକ୍ଷ୍ୟେ ପ୍ରାସାଦରେ ଆନନ୍ଦର କୋଳାହଳ ଲାଗିଗଲା । ପୁଅର ଏକୋଇଶା ଦିନ ଦରବାରର ସବୁ ବିଶିଷ୍ଟ ଗାୟକ ସଙ୍ଗୀତ ପରିବେଷଣ କଲେ । ନବନିଯୁକ୍ତ ଗାୟକ ସେହି ଦିନ ନିଜ ଗୁଣର ପରିଚୟ ଦେବେ ବୋଲି ସମସ୍ତେ ଧରିନେଇଥିଲେ । କିନ୍ତୁ ସେ ଚୁପ୍‌ଚାପ୍ ବସିରହିଲେ ।

ଗାୟକଙ୍କର ଏଭଳି ଆଚରଣରେ ରାଜା ବିରକ୍ତ ହେଲେ । ରାଜାଙ୍କ ମନୋଭାବ ବୁଝିପାରି ଦୁଇ ଚାରି ଜଣ ଅମାତ୍ୟ ଭଦ୍ରଲୋକଙ୍କୁ କହିଲେ, "ଆପଣ ଥରେବି କେବେ ଗାଇବେ ନାହିଁ ?"

"ଗାଇବି ନାହିଁ କାହିଁକି ? ଉପଯୁକ୍ତ ସମୟ ଆସିଲେ ନିଶ୍ଚୟ ଗାଇବି ।" ଭଦ୍ରଲୋକ ଗମ୍ଭୀର ଭାବରେ ଉତ୍ତର ଦେଲେ ।

ଥରେ ଥରେ ରାଜାଙ୍କ ମନକୁ ମଧ୍ୟ ଏହିପରି ସନ୍ଦେହ ଆସୁଥାଏ : ଲୋକଟା ଠକ ନୁହେଁତ ? ସେ ତାଙ୍କ ଉଦାରତାର ସୁଯୋଗ ନେଇ ଦିନ କାଟୁନାହିଁ ତ ! କିଏ କହିବ, ହୁଏତ ସଙ୍ଗୀତର ସ ଅକ୍ଷର ବି ସେ ଜାଣେ ନାହିଁ !

ତେବେ ସେ ନିଜ ସନ୍ଦେହ ପ୍ରକାଶ କରି ଭଦ୍ରଲୋକଙ୍କୁ ତାଙ୍କ ପଦରୁ ହଟାଇ ବି ଦେଇପାରୁ ନ ଥା'ନ୍ତି । "ଲୋକଟି ତ ସର୍ତ୍ତ ରଖିଥିଲା — ତା'ର ପ୍ରେରଣା ହେଲେ ଯାଇ ସେ ଗୀତ ବୋଲିବ । ତାକୁ ତା' ପଦରୁ ବାହାର କରିଦେବା ଅର୍ଥ ନିଜ କଥା ଖିଲାପ କରିବା !" ସେ ଭାବୁଥାନ୍ତି ।

ରାଜପୁତ୍ର ପାଞ୍ଚ ବର୍ଷର ହୋଇଥାନ୍ତି । ସେ ହଠାତ୍ ବେମାର ପଡ଼ିଲେ । ସେ ବେମାର କ'ଣ



ତାହା କେହି ନିରୂପଣ କରି ପାରିଲେ ନାହିଁ । ଯେତେ ପ୍ରକାର ଚିକିତ୍ସା କଲେ ମଧ୍ୟ ରାଜପୁତ୍ରଙ୍କ ଅବସ୍ଥା କ୍ରମେ ଅଧିକରୁ ଅଧିକ ଖରାପ ଆଡ଼କୁ ଗଡ଼ିକଲା । ସମସ୍ତେ ତାଙ୍କ ଜୀବନର ଆଶା ଛାଡ଼ିଦେଲେ ।

ପ୍ରାସାଦରେ ଶୋକର ଛାୟା ଘୋଟି ଯାଇ-ଥାଏ । ରାଜପୁତ୍ର ଯେ କୌଣସି ସମୟରେ ମୃତ୍ୟୁ ମୁଖରେ ପଡ଼ି ପାରନ୍ତି । ସମସ୍ତେ ଏ ବିଷୟରେ ନିଶ୍ଚିତ ହୋଇ ତାଙ୍କ ଶଯ୍ୟାକୁ ଘେରିରହି ଥା'ନ୍ତି । ସେତିକିବେଳେ ସେ ଗାୟକ ଆସି ଅଳ୍ପ ଦୂରରେ ବସି ଗୀତ ବୋଲିବାର ଉପକ୍ରମ କଲେ । ଅନେକେ ତାଙ୍କ ଆଡ଼କୁ ତାଚ୍ଛଲ୍ୟସୂଚକ ଦୃଷ୍ଟିରେ ଅନାଇଲେ । ଏଇଟା କ'ଣ ଗୀତ ବୋଲିବା ସମୟ ? ସମସ୍ତଙ୍କ ମନରେ ଥାଏ ଏହି ପ୍ରଶ୍ନ ।

କିନ୍ତୁ ଗାୟକଙ୍କ କଣ୍ଠରେ କି ଯାଦୁ ଥିଲା କେଜାଣି ମୁହୂର୍ତ୍ତିକ ମଧ୍ୟରେ ସମସ୍ତେ ସବୁ ଭୁଲି ମନ୍ତ୍ରମୁଗ୍ଧ ଭଳି ବସି ତାଙ୍କ ଗୀତ ଶୁଣିବାରେ ଲାଗିଲେ । ଗୁହ୍ନ୍ ଗୁହ୍ନ୍ ଘଣ୍ଟାଟିଏ ବିତିଗଲା ।

ରାଜା ଥରେ ରାଜକୁମାରଙ୍କ ଶଯ୍ୟାକୁ ଅନାଇ ଚମକି ପଡ଼ିଲେ । ରାଜକୁମାର କାହିଁ ଗଲେ ? ସେ ଏଣେତେଣେ ଅନାଇ ଦେଖିଲେ, ରାଜ-କୁମାର କେତେବେଳେ ଶଯ୍ୟା ଛାଡ଼ି ଉଠିଯାଇ ସ୍ୱାଭାବିକ ଭାବରେ ବସି ଗୀତ ଶୁଣୁଛନ୍ତି ।

ରାଜାଙ୍କର ବିସ୍ମୟ ଓ ଆନନ୍ଦ କହିଲେ ନ ସରେ । ସେ ରାଜକୁମାରଙ୍କୁ କୋଳାଗ୍ରତ କଲେ ଏବଂ ଅନ୍ୟମାନେ ମଧ୍ୟ ରାଜକୁମାରଙ୍କୁ ଦେଖି ଆନନ୍ଦରେ କୋଳାହଳ କରିବାକୁ ଲାଗିଲେ ।

ଟିକିଏ ପରେ ରାଜା ସେହି ଗାୟକଙ୍କୁ ବିପୁଳ ସମ୍ବର୍ଦ୍ଧନା ଦେବାକୁ ସ୍ଥିରକରି ତାଙ୍କୁ ଖୋଜିଲେ । କିନ୍ତୁ କାହାନ୍ତି ସେ ଗାୟକ ? ସମସ୍ତେ ଅନ୍ୟ-ମନସ୍କ ଥିବାବେଳେ ସେ କେତେବେଳେ ଉଠି ଚାଲିଯାଇଥିଲେ । କୁଆଡ଼େ ଗଲେ କେହି ମଧ୍ୟ ତାହା ଜାଣିପାରିଲେ ନାହିଁ ।





# ଉଚ୍ଚାଭିଳାଷ

ଅନେକ ଦିନ ତଳେ ଅବନ୍ତୀ ରାଜ୍ୟରେ ବିନୋଦ ବୋଲି ଯୁବକ ଥାଏ । ତା' ମାମୁଁ ରାଜଧାନୀରେ ଜଣେ ପ୍ରତିଷ୍ଠିତ ବ୍ୟକ୍ତି ଥିଲେ । ତାଙ୍କ ପ୍ରଭାବରେ ବିନୋଦକୁ ଭଲ ଚାକିରିଟିଏ ମିଳିଗଲା ।

ବିନୋଦର ଧାରଣା ହୋଇଗଲା ଯେ ସେ ଖାସ୍ ନିଜ ଯୋଗ୍ୟତା ଯୋଗୁହିଁ ସେଭଳି ଚାକିରି ଖଣ୍ଡିକ ପାଇପାରିଛି । ମନେ ମନେ ସେ ବେଶ୍ ଗର୍ବ ଅନୁଭବ କରୁଥାଏ । ନିଜକୁ ଅନ୍ୟମାନଙ୍କଠାରୁ ଅଧିକ ଯୋଗ୍ୟ ଭାବରେ ଦେଖାଇ ହେବା ନିମନ୍ତେ ସେହି ଅନୁସାରେ ବେଶ ପୋଷାକ ପିନ୍ଧୁଥାଏ; ସେହି ଅନୁସାରେ କଥାବାର୍ତ୍ତା କରୁଥାଏ ।

ଚାକିରି ପାଇବା ପରେ ବିନୋଦ ବିବାହ କଲା । ତା' ସ୍ତ୍ରୀର ନାମ ଚନ୍ଦା । ସେ ଜଣେ ଧନୀଲୋକ ଘରର ଝିଅ ହେଲେ କ'ଣ ହେବ, ବିଳାସବ୍ୟସନ ପ୍ରତି ତା'ର କୌଣସି ଆକର୍ଷଣ ନ ଥାଏ ।

କିନ୍ତୁ ବିନୋଦର ମନୋଭାବ ଥାଏ ଭିନ୍ନ । ସେ ସବୁଦିନେ ନିଜ ସହକର୍ମୀମାନଙ୍କୁ ଘରକୁ ନିମନ୍ତ୍ରଣ କରିଆଣି ବହୁତ ଖିଆପିଆ କରାଉଥାଏ । ଚନ୍ଦା ପାଇଁ ନୂଆ ନୂଆ ପୋଷାକ କିଣି ଆଣୁଥାଏ । ଚନ୍ଦା ସେସବୁ ପିନ୍ଧି ତା' ବନ୍ଧୁମାନଙ୍କ ଆଗରେ ବାହାରୁ, ଏହା ଥିଲା ତା'ର ଇଚ୍ଛା ।

ଚନ୍ଦା ସ୍ୱଭାବରେ ଥିଲା ଅତ୍ୟନ୍ତ ନମ୍ର । ସେ ଘରର ସବୁ କାମଦାମ ମନ ଦେଇ କରୁଥାଏ । କିନ୍ତୁ ବିନୋଦର ବଦ୍‌ଖର୍ଚ୍ଚ ଓ ବାହାଦୁରି ତାକୁ ଭଲ ଲାଗୁ ନ ଥାଏ ।

ଥରେ ଅଧେ ସେ ବିନୋଦକୁ ଚେତାଇ-



ହେଲା, "ତୁମର ଆୟ ତୁଳନାରେ ବ୍ୟୟ ବେଶୀ ହୋଇଯାଉଛି । ଟଙ୍କା ଆଣୁଛ କୁଆଡ଼ୁ ?"

"ଅବଶ୍ୟ କରଜ କରୁଛି । କିନ୍ତୁ ନକଲେ ଚଳିବ କିପରି ? ନିଜ ସମ୍ମାନ ନିଜେ ଉପରକୁ ନ ଟେକିଲେ ମୋ ପାଇଁ କ'ଣ ଆଉ କିଏ ଟେକିଦେବ ?" ବିନୋଦ ଉତ୍ତର ଦେଉଥାଏ ।

ବର୍ଷେ ଦେଢ଼ ବର୍ଷ ପରେ ବିନୋଦର ମହାଜନମାନେ ତାକୁ ବାରମ୍ବାର ଋଣପରିଶୋଧ ନିମନ୍ତେ ତାଗିଦା ଦେଇ ହଇରାଣ କରିବାକୁ ଲାଗିଲେ । ବିନୋଦ ଅଡୁଆରେ ପଡ଼ିଲା ।

ଦିନେ ବିନୋଦ ଘରେ ବସି ବସି ଭାବୁଥାଏ, "ନିଜ ସମ୍ମାନ ବଢ଼ାଇବା ସକାଶେ ଋଣ କଲି; କିନ୍ତୁ ଋଣଦାତାମାନଙ୍କ ଜୁଲମ୍ ଯୋଗୁ ସମ୍ମାନ ଧୂଳିସାତ୍ ହେବାକୁ ବସିଲାଣି । ଏବେ ଉପାୟ କ'ଣ ? ମୋତେ ଏପରି ଚାକିରି କରିବାକୁ ହେବ, ଯେଉଁଥିରେ ଦରମା ଆହୁରି ଅଧିକ ହୋଇଥିବ ।"

ସେତିକିବେଳେ ତା' ମାମୁଁ ତା' ଘରକୁ ବୁଲି ଆସିଲେ । ବିନୋଦ ବେଳ ଉଣ୍ଡି କହିଲା, "ମାମୁଁ ! ଆପଣ ଇଚ୍ଛା କଲେ ମୋତେ ଆହୁରି ବଡ଼ ଚାକିରିରେ ରଖାଇଦେଇ ପାରିବେ । ଏ ଚାକିରିରେ ମୋତେ ସୁଖ ଲାଗୁନାହିଁ ।"

ମାମୁଁ ଆଶ୍ଚର୍ଯ୍ୟ ତଥା ଦୁଃଖିତ ହେଲେ । ସେ ବିନୋଦ ପାଇଁ ଯେଉଁ ଚାକିରି ଠିକ୍ କରିଦେଇଥିଲେ, ବିନୋଦ ତା'ର ମର୍ଯ୍ୟାଦା ବୁଝି ନାହିଁ ବୋଲି ସେ ଜାଣିଲେ ।

ତେବେ ଉପରକୁ ସେ ନିଜ ମନୋଭାବ ପ୍ରକାଶ ନ କରି ପଚାରିଲେ, "କି ପ୍ରକାର ଚାକିରି ହେଲେ ତୋତେ ଭଲ ଲାଗିବ ?"

"ଧରନ୍ତୁ, ରାଜାଙ୍କ କୋଷାଧ୍ୟକ୍ଷ ପଦ କିମ୍ବା ବିଚାରକ ପଦ ।" ବିନୋଦ କହିଲା ।

ମାମୁଁ ଟିକିଏ ଭାବଚିନ୍ତା କହିଲେ, "ଭଲ କଥା । ମୋ ସାଥିରେ ସହରକୁ ଚାଲ । କୋଷାଧ୍ୟକ୍ଷ ମୋର ବିଶେଷ ବନ୍ଧୁ । ସେ କେବେ ଅବସର ଗ୍ରହଣ କରିବେ, ସେକଥା ତାଙ୍କୁ ପଚାରିବା ।"

ବିନୋଦର ମୁହଁ ଆନନ୍ଦରେ ଝଲସିଉଠିଲା । ସେ ପରଦିନ ମାମୁଁଙ୍କ ସହ ସହରକୁ ଗଲା ।

ଯିବା ପୂର୍ବରୁ ସେ ଏପରି ବ୍ୟବହାର କରୁଥାଏ, ଯେପରିକି ସେ କୋଷାଧ୍ୟକ୍ଷ ବା ବିଗୃରକ ହୋଇସାରିଲାଣି । ମାମୁଁଙ୍କ ସହ ସେ ତା'ର ସବୁଠାରୁ ଭଲ ପୋଷାକ ପରିଛଦ ପିନ୍ଧି ବାହାରିଗଲା ।

ମାମୁଁ ଯାଇ କୋଷାଧ୍ୟକ୍ଷଙ୍କ ଘରେ ପହଞ୍ଚିଲେ । କୋଷାଧ୍ୟକ୍ଷ ପୁରୁଣା ବନ୍ଧୁଙ୍କୁ ଦେଖି ସଂବର୍ଦ୍ଧନା ଜଣାଇଲେ, କିନ୍ତୁ ତାଙ୍କ ମନରେ ସୁଖ ନ ଥିଲା । କ୍ରମେ ସେ ସବୁକଥା କହିଗଲେ : ଦୀର୍ଘ ତିରିଶ ବର୍ଷ କାଳ ସେ ଭିନ୍ନ ଭିନ୍ନ ପଦରେ ରହି କ୍ରମେ ତଳରୁ ଉପରକୁ ଉଠି ଉଠି ରାଜାଙ୍କ କୋଷାଧ୍ୟକ୍ଷ ହୋଇଥିଲେ, ସେ ପଦକୁ ଆସିବା ପରେ ତାଙ୍କୁ ସନ୍ତୋଷ ତ ଦୂରର କଥା, ପୂର୍ବରେ ଯେତିକି ଶାନ୍ତି ସେ ପାଉଥିଲେ, ସେତିକି ବି ଯାଇଛି । କେଇଦିନ ତଳେ ରାଜକୋଷରେ କିଛି ହିସାବ ଗୋଳମାଳ ହୋଇଛି । ତାଙ୍କ ଦ୍ୱାରା ନିଯୁକ୍ତ ଜଣେ ସହକାରୀ ଲକ୍ଷାଧିକ ଟଙ୍କା ଆତ୍ମସାତ୍ କରି ପଳାଇଛି । କିନ୍ତୁ ସେ ପାଇଁ ତାଙ୍କୁ ଦାୟୀ ହେବାକୁ ପଡ଼ିବ । ନିଜ ଜମିଜମା ସେ ବିକି କରିବାକୁ ବାହାରିଛନ୍ତି ।

କିଛି ସମୟ ଗପସପ ହେବା ପରେ ମାମୁଁ ଓ ବିନୋଦ ବାହାରିଆସିଲେ । ମାମୁଁ କହିଲେ, "ଆଜି ତାଙ୍କୁ ତୋ ବିଷୟ କହିବା ଉଚିତ ହୋଇ ନ ଥା'ନ୍ତା । ଆଉ ଥରକୁ କହିବ ।"



"ନା, ମାମୁଁ । ତାଙ୍କୁ କହିବା ଦରକାର ନାହିଁ । ମୁଁ ସେ ପଦ ଚାହେଁନା ।" ବିନୋଦ କହିଲା ।

ପରଦିନ ଦୁହେଁ ବିଚାରକଙ୍କ ଘର ଆଡ଼କୁ ଚାଲିଲେ । ଘର ଅଳ୍ପଦୂର ଅଛି, ସେମାନେ ଦୁଇଜଣ ଯୁବକଙ୍କୁ ଭେଟିଲେ । ଯୁବକ ଦୁଇଜଣ ମାମୁଁଙ୍କୁ ଚିହ୍ନିଥିଲେ ଓ ନମସ୍କାର କଲେ । ମାମୁଁ ସେମାନଙ୍କୁ କୁଶଳ ଜିଜ୍ଞାସା କରନ୍ତେ ସେମାନେ କହିଲେ, "ଆମ ଦୁଃଖକଥା କହନ୍ତୁ ନାହିଁ । ଚାରିଆଡ଼େ ବୁଲି ବୁଲି ଚାକିରି ପାଇଲୁ ନାହିଁ । ବିଚାରକଙ୍କ ପାଖକୁ ଯାଇଥିଲୁ । କାଳେ ତାଙ୍କ ପାଖରେ କିଛି ଚାକିରି ଥିବ ବୋଲି ଆଶା କରିଥିଲୁ । ସେ ବି ଆମକୁ ସାହାଯ୍ୟ କରିପାରିଲେ ନାହିଁ ।"

"ତାହାହେଲେ କରିବ କ'ଣ ?" ମାମୁଁ ପଚାରିଲେ ।

"ଗାଁକୁ ଯାଇ ଯାହା ଜମିଜମା ଅଛି, ସେଥିରେ ଚାଷବାସ କରି ଚଳିବୁ ।" ଯୁବକ ଦୁଇଜଣ କହିଲେ ।

ମାମୁଁଙ୍କ ସହ ଯୁବକ ଦୁଇଜଣଙ୍କ କଥାବାର୍ତ୍ତାରୁ ବିନୋଦ ବୁଝିଲା ଯେ ସେ ଦୁହେଁ ତା'ଠାରୁ ଅନେକ ବେଶୀ ପାଠ ପଢ଼ିଛନ୍ତି !

"ମାମୁଁ, ବିଚାରକଙ୍କ ପାଖକୁ ଯିବାପାଇଁ ମୋର ମନ ବଳୁନାହିଁ ।" ବିନୋଦ କହିଲା ।

"ତେବେ କ'ଣ କରିବ ?" ମାମୁଁ ପଚାରିଲେ ।

"ଯେଉଁ ଚାକିରିରେ ଅଛି, ସେଥିରେ ଥିବି । ତୁମ ଯୋଗୁଁ ଚାକିରି ଖଣ୍ଡିକ ସହଜରେ ମିଳିଯାଇଥିଲା ବୋଲି ମୁଁ ତା'ର ମର୍ଯ୍ୟାଦା ବୁଝି ନ ଥିଲି । ଏବେ ବୁଝୁଛି ।" ବିନୋଦ କହିଲା ।

ମାମୁଁ ସନ୍ତୁଷ୍ଟ ହୋଇ ହସିଲେ ଓ କହିଲେ, "ତୁ ବୁଦ୍ଧିମାନ୍ ଯୁବକ । ଏଥର ହିସାବରେ ଚଳ । ମୋର ସନ୍ଦେହ ନାହିଁ, ନିଷ୍ଠା ସହକାରେ କାମ କଲେ ତୁ ବହୁତ ଉନ୍ନତି କରିବୁ । ଖାଲି ଉଚ୍ଚାଭିଳାଷରେ ସନ୍ତୋଷ ମିଳେ ନାହିଁ ।"





# ଶୁକ୍ରାଚାର୍ଯ୍ୟ

ଦାନବମାନଙ୍କ ଗୁରୁ ଶୁକ୍ରାଚାର୍ଯ୍ୟ ମହାନ୍ ଋଷି ଭୃଗୁଙ୍କର ପୁତ୍ର । ଶୁକ୍ର ପ୍ରଥମେ ବୃହସ୍ପତିଙ୍କ ପିତା ଅଙ୍ଗିରସ୍‌ଙ୍କ ପାଖରେ ବିଦ୍ୟାଭ୍ୟାସ କରୁଥିଲେ । କିନ୍ତୁ ତାଙ୍କର ପକ୍ଷପାତ ବ୍ୟବହାରରେ ସେ ଦୁଃଖିତ ହୋଇ ତାଙ୍କୁ ଛାଡ଼ି ଗୌତମଙ୍କ ପାଖକୁ ଗଲେ ।

ଗୌତମ ଶୁକ୍ରାଚାର୍ଯ୍ୟଙ୍କର ଅଭିପ୍‌ସା ଦେଖି ମୁଗ୍‌ଧ ହୋଇ କହିଲେ, ଯେ ସେ ଯଦି ସ୍ୱୟଂ ଶିବଙ୍କଠାରୁ ଶିକ୍ଷାପ୍ରାପ୍ତ ହୁଅନ୍ତି ତେବେ ତାଙ୍କର ଅଭିପ୍‌ସା ସିଦ୍ଧ ହେବ । ତା'ପରେ ଶୁକ୍ର ଶିବଙ୍କୁ ପ୍ରସନ୍ନ କରି ତାଙ୍କଠାରୁ "ମୃତସଞ୍ଜୀବନୀ" ନାମକ ଦୁର୍ଲଭ ମନ୍ତ୍ର ଲାଭ କଲେ ।

ତା'ପରେ ସେ ଦାନବଙ୍କର ଗୁରୁ ହେଲେ । ଦେବଦାନବ ଯୁଦ୍ଧରେ ମୃତ ଦାନବମାନେ ମୃତସଞ୍ଜୀବନୀ ଦ୍ୱାରା ବଞ୍ଚିଉଠିଲେ । ସେଥିପାଇଁ ଅନ୍ଧକାସୁର ନାମକ ରାକ୍ଷସକୁ ବଧ କରିବା କ୍ରମେ ଏକ ସମସ୍ୟା ରୂପେ ଦେଖାଦେଲା ।

ଅନ୍ଧକାସୁର ପ୍ରଥମରୁ ଖୁବ୍ ତପସ୍ୟାଶକ୍ତି ଲାଭ କରିଥିଲା ଓ ବହୁତ ଉନ୍ନତ ଥିଲା । ସେଥିପାଇଁ ସେ ସବୁବେଳେ ସୁନ୍ଦରୀ ସ୍ତ୍ରୀମାନଙ୍କୁ ଆଣି ବନ୍ଦୀ କରି ରଖିଲା । ଏପରିକି ପାର୍ବତୀଙ୍କ ଉପରେ ମଧ୍ୟ ତା'ର କୁଦୃଷ୍ଟି ପଡ଼ିଲା ।

ଏପରି ସନ୍ଧିକ୍ଷଣ ମଧ୍ୟରେ ଶିବ ବାଧ୍ୟ ହୋଇ ଶୁକ୍ରାଚାର୍ଯ୍ୟଙ୍କୁ ପ୍ରଥମେ ଗିଳିଦେଲେ ଓ ଅନ୍ଧକାସୁରକୁ ବଧ କରିବା ପରେ ପୁଣି ତାଙ୍କୁ ପେଟରୁ ବାହାର କଲେ । ଶୁକ୍ରଙ୍କ ବିଦ୍ୟା ଯୋଗୁ ଦାନବମାନେ ଯେପରି ବଳଶାଳୀ ନ ହୁଅନ୍ତି ସେଥିପାଇଁ ଇନ୍ଦ୍ର ନିଜ କନ୍ୟା ଜୟନ୍ତୀଙ୍କୁ ଶୁକ୍ରାଚାର୍ଯ୍ୟଙ୍କ ନିକଟକୁ ପଠାଇଲେ । ଶୁକ୍ରାଚାର୍ଯ୍ୟ ଜୟନ୍ତୀଙ୍କ ସୌନ୍ଦର୍ଯ୍ୟରେ ମୋହିତ ହୋଇ ଦାନବମାନଙ୍କଠାରୁ ଦୂରେଇଗଲେ । ଇତି ମଧ୍ୟରେ ବୃହସ୍ପତି ଶୁକ୍ରାଚାର୍ଯ୍ୟଙ୍କ ରୂପ ଧରି ଆସି ଦାନବମାନଙ୍କ ମଧ୍ୟରେ ରହି ସେମାନଙ୍କ ଗୁପ୍ତ କଥା ସବୁ ଜାଣିନେଲେ ।

ଶୁକ୍ରାଚାର୍ଯ୍ୟ ଫେରିଆସିଲେ । ସେତେବେଳେ ବୃହସ୍ପତିଙ୍କ ପୁତ୍ର କଚଙ୍କୁ ଦେବତାମାନେ ଶୁକ୍ରଙ୍କଠାରୁ ମୃତସଞ୍ଜୀବନୀ ଶିକ୍ଷା ପାଇଁ ପଠାଇଥା'ନ୍ତି । ସେ ଖୁବ୍ ଗୁରୁସେବା କରି ଶୁକ୍ରଙ୍କୁ ଖୁସୀ ରଖିଥା'ନ୍ତି । ଏଣେ ଶୁକ୍ରଙ୍କ କନ୍ୟା ଦେବଯାନୀ ମଧ୍ୟ କଚଙ୍କୁ ଖୁବ୍ ଭଲ ପାଉଥା'ନ୍ତି । ସେଥିପାଇଁ ଦାନବମାନେ ବାରମ୍ବାର କଚଙ୍କୁ ମାରିଲେ ମଧ୍ୟ ଶୁକ୍ରାଚାର୍ଯ୍ୟ ଦେବଯାନୀଙ୍କ ଅନୁରୋଧରେ ତାଙ୍କୁ ପୁଣି ବଞ୍ଚାଇଦେଉଥା'ନ୍ତି । ଥରେ ଦାନବମାନେ କଚଙ୍କୁ ମାରି ତାଙ୍କୁ ପୋଡ଼ି ତା'ର ଭସ୍ମ ସୁରାରେ ମିଶାଇ ଶୁକ୍ରାଚାର୍ଯ୍ୟଙ୍କୁ ପିଆଇଦେଲେ । ପରେ ଦେବଯାନୀଙ୍କ ଅନୁରୋଧରେ ସେ ମନ୍ତ୍ରବଳରେ ସବୁ ଜାଣିନେଲେ । କିନ୍ତୁ ସେତେବେଳେ ଆଉ ଉପାୟ ନ ଥିଲା । କଚ ବଞ୍ଚିଲେ ଶୁକ୍ରାଚାର୍ଯ୍ୟଙ୍କୁ ମରିବାକୁ ହେବ । ତେଣୁ ବାଧ ହୋଇ ସେ କଚଙ୍କୁ ମୃତସଞ୍ଜୀବନୀ ବାହାରୁ ଶିକ୍ଷା ଦେଲେ । ତା'ପରେ କଚ ତାଙ୍କ ପେଟ ଚିରି ବାହାରି ଆସି ପୁଣି ତାଙ୍କୁ ବଞ୍ଚାଇଲେ । ସେଇଦିନଠୁ ଶୁକ୍ରାଚାର୍ଯ୍ୟ ମଦ୍ୟପାନ ନିଷେଧ କରିଥିଲେ ।

ଶୁକ୍ରାଚାର୍ଯ୍ୟଙ୍କର ଗୋଟିଏ ଆଖି ଥିଲା ଦୃଷ୍ଟିଶକ୍ତିହୀନ । ବାମନ ଅବତାର ବେଳେ ଦୈତ୍ୟରାଜା ବଳି ଯେତେବେଳେ ଦାନ ଦେବାକୁ ଗଲେ ଶୁକ୍ରାଚାର୍ଯ୍ୟ ତାଙ୍କୁ ସାବଧାନ କରାଇଦେଲେ ଯେ ବାମନହିଁ ସ୍ୱୟଂ ବିଷ୍ଣୁ । ବଳି କିନ୍ତୁ ମାନିଲେ ନାହିଁ । ତେଣୁ ଦାନ ଦେବାକୁ ଯିବା ପୂର୍ବରୁ ପାଣି ଦେବା ବେଳେ ପାଣି ବନ୍ଦ କରିବାକୁ ଶୁକ୍ରାଚାର୍ଯ୍ୟ କଳସୀର ପାଣି ନଳୀ ମୁହଁରେ ମାଛି ରୂପରେ ବସିରହିଲେ । ବଳି କୁଶଦ୍ୱାରା ବିଦ୍ଧ କରି ପାଣିନଳୀର ମୁହଁ ଖୋଲିବାରୁ ତାଙ୍କର ଗୋଟିଏ ଆଖିରେ ଆଘାତ ପ୍ରାପ୍ତ ହୋଇ ସେ କଣା ହୋଇଗଲେ । ସେହିଦିନରୁ ଶୁକ୍ରଚାର୍ଯ୍ୟ ମାତ୍ର ଏକ ଚକ୍ଷୁରେ ଦେଖୁଥିଲେ ।

ସେ ଥିଲେ ଜଣେ ମହାଜ୍ଞାନୀ, ପଣ୍ଡିତ, କବି । ପ୍ରତ୍ୟେକ ଦିନ ଆମେ ଯେଉଁ ପ୍ରଭାତୀ ତାରା ଓ ସନ୍ଧ୍ୟା ତାରା ଦେଖୁ ତାହାହିଁ ଶୁକ୍ରାଚାର୍ଯ୍ୟଙ୍କ ନାମରେ ନାମିତ ଅତ୍ୟନ୍ତ ଉଜ୍ଜ୍ୱଳ ନକ୍ଷତ୍ର । ଏବେ ବି ତାହା ଆମକୁ ସେଇ ପୁରାଣ କଥା ମନେ ପକାଇଦିଏ ।





ଭାରତ-କାହାଣୀ

# ଆଦର୍ଶ ଶିଷ୍ୟ

ବହୁ କାଳ ତଳର କଥା । ଥିଲେ ଧୌମ୍ୟ ନାମରେ ଜଣେ ଋଷି । ବଣ ଭିତରେ ଥିବା ତାଙ୍କ ଆଶ୍ରମରେ ରହୁଥିଲେ ଅନେକ ଶିକ୍ଷାର୍ଥୀ । କେବଳ ଅଧ୍ୟୟନ ଦ୍ୱାରା ନୁହେଁ, ଗୁରୁଙ୍କ ନିର୍ଦ୍ଦେଶରେ କଠିନ ଦୈହିକ କାମ କରି ସେମାନେ ଅଭି-ଜ୍ଞତା ଲାଭ କରୁଥିଲେ ।

ଧୌମ୍ୟଙ୍କ ଗୋରୁଗାଈଙ୍କ ଦେଖାଶୁଣା କରିବା ଦାୟିତ୍ୱ ନ୍ୟସ୍ତ ଥିଲା ଉପ-ମନ୍ୟୁ ନାମକ ଶିଷ୍ୟଙ୍କ ଉପରେ । ଉପ-ମନ୍ୟୁ ପ୍ରଭାତରେ ଗୋରୁଗାଈଙ୍କୁ ପ୍ରାନ୍ତର ଭିତରକୁ ନେଇଯାଇ ସନ୍ଧ୍ୟାବେଳକୁ ଫେରାଇ ଆଣୁଥିଲେ । ସେ ସେମାନଙ୍କର ଉତ୍ତମ ତତ୍ତ୍ୱ ନେଉଥିଲେ ।





ଦିନେ ହଠାତ୍ ଗୁରୁ ଉପମନ୍ୟୁଙ୍କୁ ପ୍ରଶ୍ନ କଲେ, "ତୁମେ ଦିନବେଳେ ଖାଅ କ'ଣ ?" ଉପମନ୍ୟୁ ଉତ୍ତର ଦେଲେ, ଗୋରୁଙ୍କୁ ପଡ଼ିଆରେ ଛାଡ଼ି ସେ ନିକଟ-ବର୍ତ୍ତୀ ଗ୍ରାମକୁ ଯାଇ ଭିକ୍ଷା କରି ଖାଆନ୍ତି । ଗୁରୁ ଗମ୍ଭୀର ସ୍ୱରରେ ପଚାରିଲେ, "ମୋ ଅନୁମତି ବିନା ତୁମେ ଖାଅ କିପରି ?"



ପରଦନଠାରୁ ଉପମନ୍ୟୁ ଯାହା ଭିକ୍ଷା ପାଆନ୍ତି, ତାହା ଆଣି ଗୁରୁଙ୍କୁ ସମର୍ପଣ କରିଦଅନ୍ତି । ସେ ଆଶା କରୁଥାନ୍ତି, ଗୁରୁ ତାଙ୍କୁ ସେ ଭିକ୍ଷାର ଗୋଟିଏ ଅଂଶ ଦେବେ । କିନ୍ତୁ ଗୁରୁ ନୀରବ ରହୁଥାନ୍ତି । ଉପମନ୍ୟୁ କିନ୍ତୁ ଭେଟି ଦେବାରେ ତ୍ରୁଟି କରନ୍ତି ନାହିଁ ।



ଉପମନ୍ୟୁ ଅତଃପର ଦୁଗ୍ଧପାନ କରି କ୍ଷୁଧା ନିବାରଣ କରିବାକୁ ଲାଗିଲେ । କିନ୍ତୁ ଗୁରୁ ତାଙ୍କୁ ଜଣାଇଦେଲେ, ଆଶ୍ରମରେ ଦୁହାଁ ହୋଇସାରିବା ପରେ ଗାଈମାନଙ୍କ ସ୍ତନରେ ଯେତିକି ଦୁଗ୍ଧ ଥାଏ, ତାହା ସେମାନଙ୍କ ଶାବକମାନଙ୍କ ପାଇଁ ଉଦ୍ଦିଷ୍ଟ ।



ବାଛୁରୀମାନେ ସେମାନଙ୍କ ମା'ମାନଙ୍କ-ଠାରୁ ଦୁଗ୍ଧ ପାନ କରିସାରିବା ପରେ ମୁହଁରୁ ଯେଉଁ ଫେଣ ବାହାର କରନ୍ତି, ଉପମନ୍ୟୁ ତା'ପରଠାରୁ ତାହାହିଁ ଗ୍ରହଣ କଲେ । କିନ୍ତୁ ବାଛୁରୀମାନେ କାଳେ ତାଙ୍କ ପାଇଁ ବେଶୀ ଫେଣ ବାହାର କରି ନିଜେ ଦୁର୍ବଳ ହୋଇପଡ଼ିବେ, ସେ ଦୃଷ୍ଟିରୁ ତାଙ୍କୁ ସେତିକି ସେବନ କରିବାକୁ ବି ବାରଣ କରାଗଲା ।

କ୍ଷୁଧାର୍ତ୍ତ ଉପମନ୍ୟୁ ଦିନେ ଏପରି ଏକ ବୃକ୍ଷନିଃସୃତ ରସ ପାନ କଲେ, ଯାହା ବିଷାକ୍ତ । କେତେବିନ୍ଦୁ ରସ ତାଙ୍କ ଆଖିକୁ ଛିଟିକିପଡ଼ିଲା । ଫଳରେ ସେ ଅନ୍ଧ ହୋଇଗଲେ । ବାଟ ଦଉଣ୍ଡି ଦଉଣ୍ଡି ସେ ଆଶ୍ରମ ଅଭିମୁଖେ ଗ୍ଲଲେ ।





ଯାଉ ଯାଉ ସେ ପଡ଼ିଗଲେ ଗୋଟିଏ ଖାତ ଭିତରେ । ସେ ଏଡ଼େ ଦୁର୍ବଳ ହୋଇ-ପଡ଼ିଥାନ୍ତି ଯେ ସେ ଆଉ ବାହାରି ଆସି ପାରିଲେ ନାହିଁ କି କାହାରି ସାହାଯ୍ୟ ପାଇଁ ପାଟି ମଧ୍ୟ କରିପାରିଲେ ନାହିଁ । କ୍ରମେ ରାତି ଘୋଟିଆସିଲା ।

ଗୋରୁମାନେ ଆପେ ଆପେ ଆଶ୍ରମକୁ ଫେରିଲେ । ଉପମନ୍ୟୁ ସେମାନଙ୍କ ସହ ନ ଆସିବାର ଦେଖି ଗୁରୁଙ୍କର ଆଶଙ୍କା ହେଲା—ହୁଏତ ତାଙ୍କ ବିଶ୍ୱସ୍ତ ଶିଷ୍ୟ କୌଣସି ବିପଦରେ ପଡ଼ିଛି । ସେ ତାଙ୍କୁ ଖୋଜିବାହାରିଲେ ।





ଘଣ୍ଟାଏ ପରେ ଗୁରୁ ଉପମନ୍ୟୁଙ୍କର ସନ୍ଧାନ ପାଇଲେ । ଖାତର ଉପର ଦେଶରେ ଥାଇ ଗୁରୁ ଉପମନ୍ୟୁଙ୍କୁ ଦେବ-ଚିକିତ୍ସକ ଅଶ୍ୱିନୀକୁମାର ଓ ରେବନ୍ତ ଭ୍ରାତୃଦ୍ୱୟଙ୍କୁ ଆବାହନ କରିବାର ମନ୍ତ୍ର ଶିଖାଇ ଦେଲେ ।



ଉପମନ୍ୟୁଙ୍କ ଆବାହନରେ ଦୁଇ ଦେବ-ଚିକିତ୍ସକ ତାଙ୍କ ଆଗରେ ଆବିର୍ଭୂତ ହେଲେ ଓ ତାଙ୍କୁ ଖଣ୍ଡିଏ ପିଷ୍ଟକ ଦେଇ କହିଲେ, "ଏଇ ଗୋଟିକ ଖାଅ । ଦୃଷ୍ଟି-ଶକ୍ତି ଫେରି ପାଇବ ।" କିନ୍ତୁ ଉପମନ୍ୟୁ କହିଲେ, "ଗୁରୁଙ୍କୁ ସମର୍ପଣ ନ କରି ମୁଁ କିଛି ଖାଇ ପାରିବି ନାହିଁ ।"



ଅଶ୍ୱିନୀକୁମାର ଓ ରେବନ୍ତ ଉପମନ୍ୟୁଙ୍କ ଗୁରୁଭକ୍ତିରେ ଅତ୍ୟନ୍ତ ମୁଗ୍‌ଧ ହୋଇ ତାଙ୍କୁ ଉପରକୁ ଆଣନ୍ତେ ଗୁରୁଙ୍କ ଆଜ୍ଞା ଅନୁସାରେ ସେ ପିଷ୍ଟକ ଭକ୍ଷଣ କଲେ ଓ ତତ୍‌କ୍ଷଣାତ୍ ଦୃଷ୍ଟିଶକ୍ତି ତଥା ହୃତ ସ୍ୱାସ୍ଥ୍ୟ ଫେରିପାଇଲେ । ଦେବଭ୍ରାତୃଦ୍ୱୟ ଓ ଗୁରୁଙ୍କ ଆଶୀର୍ବାଦରେ ଧନ୍ୟ ହେଲେ ଉପମନ୍ୟୁ । ନିଷ୍ଠା ଓ ସତ୍ୟବାଦିତାର ଦୃଷ୍ଟାନ୍ତ ରୂପେ ଉପମନ୍ୟୁ ଅମର ।



# ଅବୀକ୍ଷିତ

ପ୍ରାଚୀନ କାଳରେ କରନ୍ଧମ ନାମରେ ଜଣେ ରାଜା ଥା'ନ୍ତି । ତାଙ୍କର ରାଣୀ ବୀରା ପ୍ରଥମେ ପୁଅଟିଏ ଜନ୍ମ ଦେଲେ । ତା'ର ଜାତକ ଦେଖି ଜ୍ୟୋତିଷ କହିଲେ, "ଏହି ଶିଶୁ ପ୍ରତି କୌଣସି ଦୁଷ୍ଟ ଗ୍ରହର ବୀକ୍ଷଣ (ଦୃଷ୍ଟି) ପଡ଼ିବ ନାହିଁ । ସେଥିପାଇଁ ତା'ର ନାମ ରଖାଗଲା ଅବୀକ୍ଷିତ ।"

କରନ୍ଧମଙ୍କ ପିତା ଅତ୍ୟାଚାରୀ ଥିବାରୁ ପ୍ରଜାମାନେ ତାଙ୍କୁ ସିଂହାସନରୁ ବିତାଡ଼ିତ କରି କରନ୍ଧମଙ୍କୁ ରାଜା କରାଇଲେ । କରନ୍ଧମ ରାଜକୋଷର ଧନସବୁ ବାଣ୍ଟିଦେଉଥିଲେ ପ୍ରଜାମାନଙ୍କୁ ଖୁସୀ କରିବା ପାଇଁ । ତାଙ୍କର ଏଭଳି ବ୍ୟବହାର ବିଷୟରେ ଖବର ପାଇ ପଡ଼ୋଶୀ ରାଜା ଥରେ ହଠାତ୍ ରାଜ୍ୟ ଆକ୍ରମଣ କରି ତାଙ୍କୁ ରାଜ୍ୟରୁ ବିତାଡ଼ିତ କଲେ । ସେ ଜଙ୍ଗଲକୁ ପଳାଇଯାଇ ସେଠାରେ ସୈନ୍ୟ ସଂଗ୍ରହ କରି ପୁଣି ନିଜ ରାଜ୍ୟକୁ ଦଖଲ କରିନେଲେ ।

କ୍ରମେ ଅବୀକ୍ଷିତ ବଡ଼ ହୋଇ ଏକ ପ୍ରତିଭାଶାଳୀ ଯୁବକ ହୋଇଉଠିଲେ । ତାଙ୍କର ରୂପ, ଗୁଣରେ ମୁଗ୍ଧ ହୋଇ ବିଭିନ୍ନ ରାଜ୍ୟର ରାଜକନ୍ୟାମାନେ ତାଙ୍କୁ ସ୍ୱୟଂବରରେ ସ୍ୱାମୀ ରୂପରେ ବରଣ କରିବାକୁ ଚାହିଲେ । ଥରେ ବିଶାଳା ନାମକ ରାଜକନ୍ୟାର ସ୍ୱୟମ୍ବର ହେଉଥିଲା । ସେଠାକୁ ଅବୀକ୍ଷିତ ମଧ୍ୟ ଯାଇଥିଲେ । ଅନ୍ୟ ରାଜପୁତ୍ରମାନେ ତାଙ୍କ ପ୍ରତି ଈର୍ଷ୍ୟାନ୍ୱିତ ହୋଇ ଅଧର୍ମ ଯୁଦ୍ଧ କରି ତାଙ୍କୁ ହରାଇ ବନ୍ଦୀ କଲେ । କିନ୍ତୁ ବିଶାଳା ଅବୀକ୍ଷିତଙ୍କ ବ୍ୟତୀତ ଅନ୍ୟ ରାଜକୁମାରଙ୍କୁ ବରଣ କରିବେ ନାହିଁ ବୋଲି ସ୍ପଷ୍ଟ କହିଦେଲେ । ତେଣୁ ସ୍ୱୟମ୍ବର ଅଧାରୁ ବନ୍ଦ ହେଲା ।

ଇତି ମଧ୍ୟରେ ଅବୀକ୍ଷିତଙ୍କ ପିତା କରନ୍ଧମ ଖବର ପାଇ ସୈନ୍ୟ ନେଇଆସି ସେମାନଙ୍କ ସହିତ ଯୁଦ୍ଧ କରି ସେମାନଙ୍କୁ ହରାଇ ପୁତ୍ରକୁ ବନ୍ଧନମୁକ୍ତ କଲେ । ବିଶାଳା ଅବୀକ୍ଷିତଙ୍କୁ ବିବାହ କରିବା ପାଇଁ ଅପେକ୍ଷା କରିଥାନ୍ତି । ହେଲେ

ଯୁଦ୍ଧରେ ହାରିଥିବାରୁ ସେ ଲଜ୍ଜାରେ ବିବାହ କରିବାକୁ ରାଜି ହେଲେ ନାହିଁ ।

ଏହାପରେ କରନ୍ଧମ ପିତାଙ୍କ ସହିତ ଘରକୁ ଫେରିଆସି ବ୍ରହ୍ମଚର୍ଯ୍ୟ ବ୍ରତ ଅବଲମ୍ବନ କଲେ । ତେଣେ ବିଶାଳା ହତାଶ ହୋଇ ଜଙ୍ଗଲକୁ ଯାଇ ତପସ୍ୟା କଲେ ।

ଅବୀକ୍ଷିତଙ୍କର ମା' ତାଙ୍କୁ ପୁଣି ସଂସାରୀ କରିବାକୁ ଚାହୁଁଥିଲେ । ତେଣୁ ଦିନେ ଆସି ସେ ପୁଅକୁ କହିଲେ, "ଦେଖ୍ ପୁଅ, ମୁଁ ଗୋଟିଏ ବ୍ରତ କରୁଛି । ଉଦ୍‌ଯାପନ ଦିନ ଯିଏ ଯାହା ମାଗିବ ତୁ ତାକୁ ଦେବୁ ।" ଅବୀକ୍ଷିତ ମାଙ୍କ କଥାକୁ ଗ୍ରହଣ କଲେ ।

ବ୍ରତର ଶେଷ ଦିନ ଅନେକ ଲୋକଙ୍କ ଭିତରେ ଅବୀକ୍ଷିତଙ୍କ ପିତା ମଧ୍ୟ ଆସି ଦାନ ମାଗିଲେ । ସେ କହିଲେ ତାଙ୍କର ନାତିଟିଏ ଦରକାର । ଅବୀକ୍ଷିତ ମନେ ମନେ ଠିକ୍ କଲେ ଗୃହସ୍ଥ ଜୀବନ ପୁଣି ଆରମ୍ଭ କରିବାକୁ । ହେଲେ ବିଶାଳାଙ୍କ ପାଇଁ ତାଙ୍କ ମନ ବ୍ୟସ୍ତ ଥାଏ ।

ଏପରି ସମୟରେ ଦିନେ ଜଙ୍ଗଲରେ ବୁଲୁ ବୁଲୁ ସେ ଏକ ନାରୀର ଆର୍ତ୍ତନାଦ ଶୁଣିଲେ, "ମୁଁ ଅବୀକ୍ଷିତଙ୍କର ସ୍ତ୍ରୀ, ମୋତେ ରକ୍ଷା କର ।" ବାରଂବାର ଏହି ଉଚ୍ଚାରଣ ଶୁଣି ସେ ଆଶ୍ଚର୍ଯ୍ୟ ହୋଇ ଶବ୍ଦ ଆସୁଥିବା ଦିଗରେ ଅଗ୍ରସର ହୋଇ ଦେଖିଲେ ଜଣେ ନାରୀ ଅସହାୟ ଭାବରେ ରାକ୍ଷସ କବଳରେ ପଡ଼ିଛି । ସେ ରାକ୍ଷସକୁ ମାରି ସେହି ନାରୀକୁ ମୁକ୍ତ କଲେ । ଦେବତାମାନେ ପ୍ରସନ୍ନ ହୋଇ ଅବୀକ୍ଷିତଙ୍କୁ ବର ମାଗିବାକୁ କହିଲେ । ଅବୀକ୍ଷିତ କହିଲେ, "ମୋ ପିତାଙ୍କୁ ଗୋଟିଏ ନାତି ଦରକାର । ତେଣୁ ମୋର ପୁତ୍ର ଲାଭ ହେଉ ।"

"ତଥାସ୍ତୁ । ତୁମେ ଏଇ ନାରୀ ଗର୍ଭରୁ ପୁତ୍ର ଲାଭ କର ।" ଦେବତାମାନେ କହିଲେ ।

"ସ୍ୱୟମ୍ବର ସଭାରେ ବିଶାଳା ମୋତେ ବରଣ କରିଥିଲେ । ଅନ୍ୟ ନାରୀ ଦ୍ୱାରା ପୁତ୍ର ହେବା ମୁଁ ଚାହେଁ ନାହିଁ ।" ଅବୀକ୍ଷିତ କହିଲେ ।

"ଏଇ ତ ହେଉଛନ୍ତି ବିଶାଳା । ତୁମକୁ ସ୍ୱାମୀ ରୂପେ ପାଇବାକୁ ଏହି ଜଙ୍ଗଲରେ ତପସ୍ୟା କରୁଥିଲେ ।" ଦେବତାମାନେ କହିଲେ ।





# ଚୋରଧନ

ଗୋଟିଏ ମନ୍ଦିର ପ୍ରାଙ୍ଗଣରେ ଜଣେ ବ୍ରାହ୍ମଣ ପୁରାଣ ପାଠ କରୁଥିଲେ । କଥା ପ୍ରସଙ୍ଗରେ ସେ କହିଲେ, "ଜଣେ ଅନ୍ୟର ସମ୍ପଦ ଚୋରାଇ ନେଇ ପାରେ, କିନ୍ତୁ ତାକୁ ସେ ଉପଭୋଗ କରିପାରେ ନାହିଁ ।"

ଡାବୁ, ହାବୁ ଓ ଗାବୁ ନାମକ ତିନି ଚୋର ବ୍ରାହ୍ମଣଙ୍କର ସେ ମନ୍ତବ୍ୟ ଶୁଣିପକାଇଲେ । ସେମାନେ ପରସ୍ପର କୁହାକୁହି ହେଲେ, "ଆଜି ରାତିରେ ବ୍ରାହ୍ମଣବାପୁଡ଼ା ଘରୁ ଚୋରି କରିବା । ଦେଖିବା ତା' ସମ୍ପଦ ଆମେ ଉପଭୋଗ କରି ପାରୁଛୁ ନା ନାହିଁ ! ବୁଢ଼ା ଭାରି ପଣ୍ଡିତପଣିଆ ଦେଖାଉଛି ।"

ଅଧରାତିରେ ତିନି ଚୋର ବ୍ରାହ୍ମଣ ଘରେ ପଶିଲେ । ବ୍ରାହ୍ମଣ ଓ ବ୍ରାହ୍ମଣୀଙ୍କୁ ବାନ୍ଧିପକାଇ ସେମାନଙ୍କ ମୁହଁ ବନ୍ଦ କରି ଘରେ ଥିବା ସୁନା ରୁପା ବାସନକୁସନ ସବୁ ଗଣ୍ଠିଲି ବାନ୍ଧି ପଳାଇ-ଗଲେ ।

ଗାଁ ବାହାରେ ପହଞ୍ଚି ସେମାନେ ସେମାନଙ୍କ ଅଭ୍ୟାସ ମୁତାବକ ଚୋରା ସମ୍ପଦତକ କୌଣସି ସ୍ଥାନରେ ପୋତିପକାଇ ଘରେ ଆସି ତାକୁ ନିଜ ନିଜ ଭିତରେ ବାଣ୍ଟିନେବେ ବୋଲି ସ୍ଥିର କଲେ । ତା'ପରେ ଗାତ ଖୋଳି ଗଣ୍ଠିଲି ପୋତିଲେ ଓ ଭିନ୍ନ ଭିନ୍ନ ଦିଗକୁ ଚାଲିଗଲେ ।

କିନ୍ତୁ ତିନିଜଣଯାକ ବହୁଦିନରୁ ପରସ୍ପରଙ୍କୁ ଈର୍ଷା କରୁଥା'ନ୍ତି । ସେଥିର ପ୍ରତ୍ୟେକେ ମନେ ମନେ ସ୍ଥିର କଲେ, "ଏ ଧନତକ ମୁଁ ଏକା ମାରିନେବି ।"

ଡାବୁ କିଛିଦୂର ଯାଇଛି ଦେଖିଲା ଗୋଟାଏ କୂଅ । ସେ କୂଅ ଭିତରକୁ ଗୋଟାଏ ପାହାଚକୁ ଓହ୍ଲାଇଯାଇ ଅନ୍ୟ ଦୁଇଜଣ ଦୂରକୁ ଚାଲିଯିବା

ଯାଏ ନୀରବରେ ଅପେକ୍ଷା କଲା ।

ଢାବୁ କଚ୍ଛବାଟ ଯାଇ ଦେଖିଲା, ଗୋଟାଏ ସ୍ଥାନରେ ଇଟା ତିଆରି ହେଉଛି । ସେ ଇଟା-ଘାଟି ପଛପଟେ ଲୁଚିରହିଲା । ତା'ପରେ କିଛି ଇଟା ଚୋରି କରି ସେଠାରୁ ଯାଇ ପୋତା ଗଣ୍ଠିଲି ବାହାର କଲା । ଇଟା ତଥା ଗଣ୍ଠିଲି ଧରି କିଛି ବାଟ ଯାଇ ସେ ଗଣ୍ଠିଲି ଗୋଟିକ କୂଅ ଭିତରକୁ ପକାଇଦେଲା । ଗଣ୍ଠିଲି ଯାଇ ଡାବୁ ମୁଣ୍ଡରେ ପଡ଼ିଲା । ସେ ଚେତା ହରାଇ ପାଣି ଭିତରକୁ ଖସିପଡ଼ିଲା ।

ଢାବୁର କେତେଖଣ୍ଡି ଇଟା ଅବଶ୍ୟ ପ୍ରୟୋ-ଜନ ଥିଲା, କିନ୍ତୁ ସେହି ରାତିରେ ସେ ତାହା ଚୋରି କରି ନ ଥିଲେ ବି ଚଳିଥା'ନ୍ତା । କିନ୍ତୁ ବିନାଶ କାଳେ ବିପରୀତ ବୁଦ୍ଧି । ସେ ଇଟାତକ ଧରି ଅତି କ୍ଷିପ୍ର ଗତିରେ ସେଠାରୁ ଚାଲିଯିବାକୁ ଚେଷ୍ଟା କଲା । ଇଟାଘାଟିର ଲୋକେ ତା' ଶବ୍ଦ ଶୁଣିପାରିଲେ, ତେବେ ପ୍ରଥମେ ସେ ପ୍ରତି ଧ୍ୟାନ ଦେଲେ ନାହିଁ । କିଛି ସମୟ ବିତିଗଲା ।

କିନ୍ତୁ ଢାବୁ ଇଟା ଗଣ୍ଠିଲି ଧରି ଯିବା ବାଟରେ ଗାବୁ ଢାବୁଉପରେ ପଡ଼ିଲା । ଗାବୁ ଭାବିଲା, ସେ ଧନ ଗଣ୍ଠିଲିହିଁ ଧରିଛି । "ବିଶ୍ୱାସ ଘାତକ !" ବୋଲି ପାଟି କରି ସେ ଢାବୁକୁ ଲଠିରେ ବାଡ଼େଇ ଦେଲା । ଢାବୁ ଚିତ୍କାର କରି ପଡ଼ିଗଲା । ସେ ଚିତ୍କାରରେ ଇଟା ଘାଟିର ଲୋକେ ଦୌଡ଼ି ଆସିଲେ । ସେମାନେ ଗାବୁକୁ ଧରିପକାଇଲେ । ଗାବୁହିଁ ଇଟା ଚୋରି କରି ପଳାଉଥିଲା ବୋଲି ସିଦ୍ଧାନ୍ତ କରି ସେମାନେ ତାକୁ ବନ୍ଦୀ ଛେଚିଲେ ।

ସକାଳେ ଲୋକେ ପାଣି ଆଣିବାକୁ ଆସି ଡାବୁକୁ ସେଠାରେ ଦେଖିଲେ । ତିନିହେଁ ପରସ୍ପର ବିରୁଦ୍ଧରେ ଅଭିଯୋଗ କଲେ ଓ ବିଚାରରେ ଦଣ୍ଡ ପାଇଲେ । କୂଅ ଭିତରୁ ବ୍ରାହ୍ମଣର ସମ୍ପତ୍ତି ବାହାରିଲା ଓ ତାହା ବ୍ରାହ୍ମଣଙ୍କୁ ଫେରସ୍ତ ଦିଆଗଲା ।





# ଭୀମର ବ୍ୟବହାର

ମଙ୍ଗଳ ଦାସ ହାଟରୁ ଦୁଇଟି ବାଛୁରି କିଣିଲା ।

ଗୋଟିକର ନାମ ଦେଲା ରାମ, ଅନ୍ୟଟିର ଭୀମ ।

ଦୁଇଟିଯାକ ଦେଖିବାକୁ ବଡ଼ ସୁନ୍ଦର ଓ ହୃଷ୍ଟପୁଷ୍ଟ ହୋଇଥା'ନ୍ତି ।

କ୍ରମେ ରାମ ଓ ଭୀମ ବଡ଼ ହେଲେ । ରାମ ବଡ଼ ସୁଧାର । କିନ୍ତୁ ଭୀମ ଭୀଷଣ ଅବାଧ ହେବାର ଦେଖାଗଲା । ସେ ଗାଡ଼ିରେ ଯୋଚ୍ଚ ହେବାକୁ ଅମଙ୍ଗ ହୁଏ, ପଡ଼ିଆକୁ ନେଇଗଲେ ଏଣେ ତେଣେ ଦୌଡ଼ି ପଳାଏ । ଘରକୁ ଫେରିବା ବେଳେ ବାଟରେ ନ ଆସି ଅନ୍ୟମାନଙ୍କ କ୍ଷେତରେ ପଶି ଫସଲ ଖାଇଦିଏ ।

ବେଶ୍ କିଛିଦିନ ଗଲା । ମଙ୍ଗଳର ସବୁ ଉଦ୍ୟମ ସତ୍ତ୍ୱେ ଭୀମ ବାଟକୁ ଆସିଲା ନାହିଁ ।

ମଙ୍ଗଳ ତାକୁ କାହିଁକି କିଣିଲା, ସେଇଆ ଭାବି ଅନେକ ସମୟରେ ପସ୍ତେଇ ହେଉଥାଏ ।

ଦିନେ ମଙ୍ଗଳ କ୍ଷେତରେ ବସି ଚିନ୍ତା କରୁଛି, ସେତିକିବେଳେ ସେ ବାଟରେ ସୁରେଶ ଯାଉଥାଏ । ଘଣା ଦ୍ୱାରା ତେଲ ବାହାର କରିବା ସୁରେଶର କାମ । ସେ ମଙ୍ଗଳକୁ କହିଲା, "ମୋର ଦୁଇଦିନ ପାଇଁ ଗୋଟାଏ ବଳୁଆ ବଳଦ ଦରକାର । ତୁମେ ସାହାଯ୍ୟ କରିପାରିବ ?"

"ନିଶ୍ଚୟ, ନିଶ୍ଚୟ !" ମଙ୍ଗଳ କହିଲା ଓ ଭୀମକୁ ଆଣି ସୁରେଶ ଜିମା ଛାଡ଼ିଦେଲା ।

ଭୀମକୁ ରାମଠାରୁ ଅଲଗା କରା ହେଲା । ସୁରେଶ ତାକୁ ଅଡ଼ାଇ ନେଇଗଲା ବେଳେ ସେ ଟିକିଏ ଅମଙ୍ଗ ହେବା ମାତ୍ରେ ତା' ପିଠିରେ ବାଧାଏ ପକାଇଲା । ସୁରେଶର ଘଣା ପାଖରେ ପହଞ୍ଚିଲା ବେଳକୁ ସେ ଦଶବାଧା ପାଇଥାଏ ।

ରାଜେନ୍ଦ୍ର

ଘଣାରେ ଯୋଗ୍ୟ ହୋଇ ଶ୍ୟାମକୁ ଆଖିରେ ପଟି ଲଗାଇ ଦୁଇଦିନ କାଳ ଚକ୍ରାକାରେ ବୁଲିବାକୁ ପଡ଼ିଲା । ସେଭଳି କଷ୍ଟ ସେ କେବେ ପାଇ ନ ଥିଲା । ଜଗତ ତାକୁ ଅନ୍ଧକାରମୟ ମନେ ହେଲା ।

ଦୁଇଦିନ ତାକୁ ଦୁଇ ଯୁଗ ପରି ଲାଗିଥିଲା । ମଙ୍ଗଳ ଦୁଇଦିନ ପରେ ଶ୍ୟାମକୁ ଗୋଟାଏ ଗାଡ଼ିବାଲା ଜିମା ଦେଲା । ଗାଡ଼ିବାଲା ତାକୁ ନିଜ ଗାଡ଼ିରେ ଯୋଚି ଏଣେତେଣେ ଯିବାକୁ ବାଧ୍ୟ କଲା । ଶ୍ୟାମ ଗତି ମନ୍ଥର କଲେ ପିଠିରେ ଚାବୁକମାଡ଼ ପଡ଼ଏ ।

ଶ୍ୟାମ ମନେ ମନେ ତା' ଖାଉନ୍ଦ ମଙ୍ଗଳକୁ ଝୁରିହେଉଥାଏ । ମଙ୍ଗଳ ତାକୁ ଶାସନ କରୁଥାଏ ସତ, କିନ୍ତୁ ଏମାନଙ୍କ ନିଷ୍ଠୁର ବ୍ୟବହାର ତୁଳନାରେ ସେ ଶାସନ ଥିଲା ବେଶ୍ ସୁଖପ୍ରଦ । ମଧ୍ୟେ ମଧ୍ୟେ ସେ ରାମକୁ ଦେଖୁଥାଏ । ସେ ମଙ୍ଗଳ ସହ ତା' କ୍ଷେତକୁ ଯାଉଥାଏ । ଭଲରେ ଫେରୁଥାଏ । ମଙ୍ଗଳ ତାକୁ ଗେଲ କରୁଥାଏ ।

ଶ୍ୟାମ କପାଳରେ ଆହୁରି ଦୁଃଖ ଥିଲା । ମଙ୍ଗଳ ତାକୁ ଗାଡ଼ିବାଲା ପାଖରୁ ଆଣି ଆଉ ଜଣେ ଲୋକକୁ ଦେଲା । ସେ ଲୋକ କୂଅରୁ ପାଣି କାଢ଼ିବା କାମରେ ଶ୍ୟାମକୁ ନିଯୁକ୍ତ କଲା । ଗୋଟିଏ କାଠ ଦଣ୍ଡ ସହ ସେ ବନ୍ଧା ହୋଇଥାଏ । ସେ ଆଗକୁ ଗଲେ ଦଣ୍ଡ ଉପରକୁ ଉଠେ । ସେଥି ସହିତ ସଂଲଗ୍ନ ଦଉଡ଼ା ସାହାଯ୍ୟରେ କୂଅରୁ ପାଣିପାତ୍ର ଉପରକୁ ଉଠିଆସେ । କିନ୍ତୁ ସେ ପାତ୍ର ପାଣିରେ ବୁଡ଼ିବା ନିମନ୍ତେ ଶ୍ୟାମକୁ ପଛେଇ ପଛେଇ କେତେ ପାଦ ଯିବାକୁ ପଡ଼େ ।

ଏଡ଼େ ବିରକ୍ତିକର କାମ ଦୁନିଆରେ ଅଛି ବୋଲି ଶ୍ୟାମ ଜାଣି ନ ଥିଲା ।

ଏହା ପରେ ମଙ୍ଗଳ ତାକୁ ନିଜ ଘରକୁ ଫେରାଇ ଆଣିଲା । ସେତେବେଳକୁ ଯାଇ ଶ୍ୟାମ ସ୍ୱସ୍ତି ପାଇଲା । ତେଣିକି ସେ ରାମ ଭଳି ସୁଧାର ଭାବରେ ଚଳିବାକୁ ଲାଗିଲା ।



# ପୁନର୍ଗତ ପ୍ରାଣ

ବିଜୟପୁର ଗ୍ରାମରେ ବିଶ୍ୱନାଥ ନାମରେ ଜଣେ ଭଲ ବୈଦ୍ୟ ଥା'ନ୍ତି । ସେ ନିଜ କାମରେ ସୁନାମ ଅର୍ଜନ କରିଥିବାରୁ ମନରେ ଟିକିଏ ଅହଂକାର ମଧ୍ୟ ଥାଏ । କ୍ରମେ ବୁଢ଼ା ହୋଇ ପରେ ସେ ବେମାରରେ ପଡ଼ିଲେ । ତାଙ୍କ ପୁଅକୁ ସେ ନିଜ ବୃତ୍ତିରୁ କିଛିଟା ଶିଖାଇଥିଲେ । ତାଙ୍କ ରୋଗ ପାଇଁ କୌଣସି ଔଷଧ କାମ କଲା ନାହିଁ । ଅନ୍ୟ ବୈଦ୍ୟ ଆସିଲେ କାଳେ ତାଙ୍କର ସୁଖ୍ୟାତିରେ କଳଙ୍କ ଲାଗିବ ସେଥିପାଇଁ ସେ ପୁଅଠୁ ଔଷଧ ଖାଇ ମୃତ୍ୟୁକୁ ଅପେକ୍ଷା କରି ରହିଥା'ନ୍ତି ।

ପରେ ଶରଭ ନାମରେ ଜଣେ ବୈଦ୍ୟ ତାଙ୍କୁ ଦେଖିବାକୁ ଆସିଲେ । ସେ ଭାବିଲେ ବିଶ୍ୱନାଥଙ୍କ ମୃତ୍ୟୁପରେ ସେ ତାଙ୍କ ସ୍ଥାନ ନେବେ । ଏକଥା ବିଶ୍ୱନାଥ ଜାଣିପାରି ସବୁ ଶକ୍ତି ଠୁଳ କରି ଖଟ ଉପରେ ଉଠି ବସିଲେ ଓ କହିଲେ ପୁଅର ଚିକିତ୍ସାରେ ତାଙ୍କର ଅଦ୍ଭୁତ ପରିବର୍ତ୍ତନ ହେଉଛି । ଶରଭ ଏକଥା ଶୁଣି ଭାବିଲେ ଯେ ତାଙ୍କର ଆଉ ସ୍ଥାନ କାହିଁ ? ତେଣୁ ସେ ସେଠାରୁ ଚାଲିଗଲେ ।

ପୁଅ ଏ କଥାରେ ଆଶ୍ଚର୍ଯ୍ୟ ହେବାରୁ, ବିଶ୍ୱନାଥ କହିଲେ, "ପୁଅ, ତୋର ଭଲ ପାଇଁ ମୁଁ ଏତିକି ପରିଶ୍ରମ କଲି । ନଚେତ୍ ଶରଭ ଆସି ଏ ଗାଁରେ ଆସ୍ଥାନ ଜମାଇଲେ, ତୋତେ ଖାଇବାଗଣ୍ଡାକ ଯୋଗାଡ଼ କରିବା ମଧ୍ୟ ମୁସ୍କିଲ୍ ହୋଇଯା'ନ୍ତା ।" ଏତିକି କହି ସେ ଢଳିପଡ଼ିଲେ ।





# ପିଶାଚ-କୁଣିଆଁ

ଯୋଧାସିଂହଙ୍କର ଝିଅର ବାହାଘର ଠିକ୍ ହୋଇଗଲା । ନିଜ ଗାଁରେ ବାହାଘର ହେଲେ ଗାଁବାଲାଙ୍କୁ ଭୋଜି ଦେବାକୁ ହେବ, ସେଇ ଭୟରେ ସେ ଠିକ୍ କଲେ ବାହାଘର ଅନ୍ୟ ଏକ ଗାଁରେ ହେବ । କିନ୍ତୁ ଗ୍ରାମବାସୀଙ୍କୁ କହିଲେ ବରର ବାପା ସେଇଠି ବାହାଘର କରିବାକୁ ଜିଦ୍ କରୁଛି ।

ବାହାଘର ଦୁଇଦିନ ପୂର୍ବରୁ ଯୋଧାସିଂହ ପୁଅମାନଙ୍କୁ ସମସ୍ତ ବ୍ୟବସ୍ଥା କରିବାକୁ ପଠାଇ-ଦେଲେ । ଆଉ ବାହାଘରର ପୂର୍ବଦିନ ସେ ପତ୍ନୀ, କନ୍ୟା ଓ ନିହାତି ନିଜର କୁଟୁମ୍ବ କେତେଜଣ ଧରି ବଳଦ ଗାଡ଼ିରେ ବାହାରି ପଡ଼ିଲେ ।

କିଛି ଅସୁବିଧା ନ ହୋଇଥିଲେ ସନ୍ଧ୍ୟା ସୁଦ୍ଧା ସେଠାରେ ପହଞ୍ଚନ୍ତେ । କିନ୍ତୁ ବାଟ ମଝିରେ ବଳଦଟିଏ ବେମାର ପଡ଼ିଲା । ତାକୁ କୌଣସି ଏକ ଗୃହସ୍ଥ ଘରେ ରଖି ଗୋଟିଏ ନୂଆ ବଳଦ କିଣି ପୁଣି ସେମାନେ ସେଇ ଗାଁ ଦିଗରେ ଚାଲିଲେ । ସେଥିପାଇଁ ସନ୍ଧ୍ୟା ବେଳକୁ ସେମାନେ ଅଧାରାସ୍ତା ସୁଦ୍ଧା ଟପି ପାରି ନ ଥିଲେ ।

ଡେରି ହେବାରୁ ସେ ଭାବିଲେ ଯେ ଘରଟା ଭଡ଼ା ନିଆଁ ହୋଇଛି ଆଉ ଖାଇବାପିଇ ତିଆରି ହୋଇଛି । ସବୁ ସିନା ବେକାର ଖର୍ଚ୍ଚ ହେଲା ।

ତା'ପରେ ଖୁବ୍ ବର୍ଷା ହେବାରୁ ରାସ୍ତା ମଧ୍ୟ ପାଣି କାଦୁଅରେ ପୂର୍ଣ୍ଣ ହେଲା । ରାସ୍ତା କଡ଼ରେ ଥିବା ଶ୍ମଶାନରୁ ବିଲୁଆ ଓ ପେଚାମାନଙ୍କର ବିକଟାଳ ରବ ଶୁଣାଯାଉଥିଲା । ଅନ୍ଧକାରରେ ଗୋଟାଏ କାଦୁଅ ଖାଲ ଭିତରେ ଗାଡ଼ି ପଡ଼ି-ଗଲା । ଲୋକମାନେ ଗାଡ଼ିରୁ ଓହ୍ଲାଇପଡ଼ି ଗାଡ଼ିକୁ ଖାଲରୁ ଉଠାଇବାକୁ ଚେଷ୍ଟା କଲେ ।

ରଘୁନାଥ

ଇତି ମଧ୍ୟରେ ହଠାତ୍ ଯୋଧାସିଂହ କୌଣସି କୋଳାହଳ ଶୁଣିପାରିଲେ । ତାଙ୍କୁ ଲାଗିଲା ଗାଡ଼ିର ଛଇ ଉପରେ କେହି ହଠାତ୍ ଡେଇଁ-ପଡ଼ୁଛି । ଯୋଧାସିଂହ ଗାଡ଼ି ଉପରକୁ ଚାହିଁ-ଦେଇ ପ୍ରଥମେ ଡରିଗଲେ । କେତେଜଣ ପିଶାଚ ସେଠାରେ ନାଚକୁଦ କରୁଥିଲେ । ସେ ତାଙ୍କୁ ପଚାରିଲେ, "ତୁମେସବୁ କିଏ ?"

"ଆମେସବୁ ପିଶାଚ । କିନ୍ତୁ ତୁମେସବୁ ଏ ଶ୍ମଶାନକୁ କାହିଁକି ଆସିଥିଲ ?" ଜଣେ ପିଶାଚ କହିଲା ।

ଯୋଧାସିଂହ ମନରେ ସାହସ ବାନ୍ଧି କହିଲେ, "ଶ୍ମଶାନକୁ ଆସିବା ଆମର ବା କି ଦରକାର ! କାଲି ତ ମୋ ଝିଅର ବାହାଘର ।"

"ଏଁ, ବାହାଘର ? ତାହେଲେ ତ ଲଡ଼ୁ ଜିଲାପି ବହୁତ ମିଳିବ ।" ଏକଥା କହି ପିଶାଚ-ମାନେ ଖୁସିରେ ନାଚିବାକୁ ଲାଗିଲେ ।

"ବାହାଘର ହେବ ସତ; ହେଲେ ବର୍ତ୍ତମାନ ଗାଡ଼ି ତ କାଦୁଅରେ ଲାଖିଛି । ଆମେ ଯିବୁ କିମିତି ?" ଯୋଧାସିଂହ କହିଲେ ।

"ଶୁଣ, ଆମମାନଙ୍କୁ ବାହାଘରକୁ ନେଇ-ଯିବ ତ ଆମେ ନିମିଷକେ ଗାଡ଼ିକୁ ଉପରକୁ ଉଠାଇ ଆଣିବୁ । ପିଶାଚମାନେ କହିଲେ ।

"ଗାଡ଼ି ଉଠାଇଦିଅ । ତୁମ୍ଭମାନଙ୍କୁ ବାହା-ଘରକୁ ନେଇଯିବି ।" ଯୋଧାସିଂହ କହିଲେ ।

ତା'ପରେ ପିଶାଚମାନେ ଗାଡ଼ିକୁ କାଦୁଅରୁ ଟାଣି ଉଠାଇଦେଲେ । ଗାଡ଼ି ପୂର୍ବ ତୁଳନାରେ



ଆହୁରି ଜୋର୍‌ରେ ଭଲ ଭାବରେ ଚାଲିଲା ।

"ତୁମେ କପରି ଲୋକ ବନ୍ଧୁବାନ୍ଧବଙ୍କୁ ନ ନେଇ ଶେଷରେ ପିଶାଚମାନଙ୍କୁ ବାହାଘରକୁ ନେଇଯାଉଛ ?" ଯୋଧାସିଂହଙ୍କର ସ୍ତ୍ରୀ ତାଙ୍କୁ କହିଲେ ।

"ତୁମ ମୁଣ୍ଡରେ ଗୋବର ଅଛି । ଆମେ ସେ ଗାଁରେ ପହଞ୍ଚିବା ଆଗରୁ ସକାଳ ହୋଇ-ଯିବ ଆଉ ପିଶାଚମାନେ ନିଜ ରାସ୍ତା ଧରିବେ ।" ଯୋଧାସିଂହ କହିଲେ ।

"ଗାଡ଼ି ଯେତେ ଜୋର୍‌ରେ ଚାଲୁଛି ମନେହୁଏ ସକାଳ ହେବା ଆଗରୁ ସେଠାରେ ପହଞ୍ଚିଯିବା । ତାହେଲେ କ'ଣ ହେବ ? ମୁଁ କିଛି କରି-ପାରିବନି । ତୁମେ ସେମାନଙ୍କର ଦେଖାଶୁଣା କରିବ ।" ଯୋଧାସିଂହଙ୍କ ପତ୍ନୀ କହିଲେ ।

"ସ୍ତ୍ରୀଲୋକମାନଙ୍କର ଦୂରଦୃଷ୍ଟି ନ ଥାଏ । ଆମେ ଗାଁରେ ପହଞ୍ଚୁ ପହଞ୍ଚୁ ମୁଁ କହିବ ଚାଲ ସମସ୍ତେ ଭଦ୍ରକାଳୀଙ୍କ ମନ୍ଦିରକୁ; ସେଇଠି ବାହା-ଘର ହେବ । ବାସ୍, ଦେଖିବ ସେମାନେ ସବୁ ଚମ୍ପଟ ଦେବେ ।" ଏକଥା କହି ଯୋଧାସିଂହ ହସିଉଠିଲେ ।

ନିଜ ସ୍ୱାମୀ କଥାରେ ତାଙ୍କ ସ୍ତ୍ରୀ ଖୁସି ହୋଇ-ଗଲେ ଓ କହିଲେ, "ଜୋର୍‌ରେ କୁହନି, ସେମାନେ ଶୁଣିବେ ।"

ତା'ପରେ ସମସ୍ତେ ଶୋଇଗଲେ । ଗାଡ଼ିର ଧକ୍‌କାରେ ଯେତେବେଳେ ସମସ୍ତେ ଉଠନ୍ତି ସେତେବେଳକୁ ସକାଳ ହୋଇଗଲାଣି । ଯୋଧା-ସିଂହ ଗାଡ଼ିରୁ ଓହ୍ଲାଇ ଦେଖିଲେ ରାତିରେ ଯେଉଁଠି ଗାଡ଼ି କାଦୁଅରେ ଲାଖି ରହିଥିଲା ସେଇଠାରେହିଁ ସେମିତି ରହିଛି ।

"ଆରେ ତୁମେ ମତେ ଖାଲରେ ଗାଳିଦେଲ । ମୋ କଥା ଶୁଣିପାରି ପିଶାଚମାନେ ସାରାରାତି ଗାଡ଼ି ଚଳାଇ ଗାଡ଼ିକୁ ଫେରାଇ ଆଣି ପୁଣି ଖାଲରେ ପକାଇ ଚମ୍ପଟ ଦେଇଛନ୍ତି ।" ଯୋଧାସିଂହ ତାଙ୍କ ସ୍ତ୍ରୀଙ୍କୁ କହିଲେ ।





# ଅନ୍ଧବିଶ୍ୱାସ

ରତ୍ନପୁରରେ ଧନଗୁପ୍ତ ନାମରେ ଥା'ନ୍ତି ଜଣେ ବଣିକ । ସେ ପୂର୍ବ ଦିଗରେ ଥିବା ଦ୍ୱୀପପୁଞ୍ଜମାନଙ୍କରେ ବାଣିଜ୍ୟ କରି ଖୁବ୍ ଧନୀ ହୋଇଗଲେ ଓ ସେଇଠାରେ ଗୋଟିଏ ସୁନ୍ଦରୀ କନ୍ୟା ବିବାହ କଲେ । କିଛିଦିନ ପରେ ସେ କନ୍ୟା ଓ ବହୁତ ଧନ ଧରି ସ୍ୱଦେଶକୁ ଫେରିଆସିଲେ । ଦିନେ ସେ ତାଙ୍କର ପିଲାଦିନର ଖେଳସାଥୀ ରାମଗୁପ୍ତଙ୍କୁ ଦେଖିବାକୁ ଗଲେ ।

ରାମଗୁପ୍ତ ମଧ୍ୟ ବ୍ୟବସାୟରେ ବହୁତ ଧନ ଅର୍ଜି ଲକ୍ଷପତି ହୋଇଥା'ନ୍ତି । ଦୁହେଁ ଦୁହିଁଙ୍କୁ ଦେଖି ଖୁସୀ ହେଲେ ଓ ବ୍ୟବସାୟ କ୍ଷେତ୍ରରେ ନିଜ ନିଜର ଅନୁଭୂତି ସବୁ କହିବସିଲେ ।

ରାମଗୁପ୍ତଙ୍କ ଘରର ନାମ ଥିଲା, "ସୁଦର୍ଶନ ନିଳୟ" । ନାମଟିକୁ ଦେଖି ଧନଗୁପ୍ତ ପଚାରିଲେ, "ଆଚ୍ଛା ଏଇ 'ସୁଦର୍ଶନ' ନାମଟି କାହାର ?"

"ସୁଦର୍ଶନ ମୋର ସାନ ପୁଅ । ସେ ଜନ୍ମ ହେବା ପରେ ମୋ ଭାଗ୍ୟ ଖୋଲିଗଲା । ସମୟ ଏପରି ଭଲ ଥିଲା ମାଟି ଛୁଇଁଲେ ମଧ୍ୟ ସୁନା ହୋଇଯାଉଥିଲା ।" ରାମଗୁପ୍ତ କହିଲେ ।

ବହୁତ ସମୟ ଧରି ଗପସପ ଚାଲିଲା; ହେଲେ ରାମଗୁପ୍ତ ବଡ଼ ପୁଅର ନାମ ଧରୁ ନ ଥା'ନ୍ତି, କେବଳ ସାନପୁଅର ପ୍ରଶଂସା କରୁଥା'ନ୍ତି । କିଛିସମୟ ପରେ ଧନଗୁପ୍ତ ପଚାରିଲେ, "ତୁମର କେତୋଟି ପୁଅ ?"

"ଦୁଇଟି; ବଡ଼ ପୁଅ ସୁମନ୍ତ ଦଶବର୍ଷର ଓ ସାନପୁଅ ଛ'ବର୍ଷର ।" ରାମଗୁପ୍ତ ଉତ୍ତର ଦେଲେ ।

ଧନଗୁପ୍ତ ଆଶ୍ଚର୍ଯ୍ୟ ହୋଇ ଭାବିଲେ ଯେ ରାମଗୁପ୍ତ ପରି ଲୋକର ନିଜ ଉପରେ ବିଶ୍ୱାସ ନାହିଁ । ଏହିପରି ଅନ୍ଧଭାବରେ ଭାଗ୍ୟ ଉପରେ

ଦିନେଶ



ବିଶ୍ୱାସ କରି ଚାଲିଛି । ସେ ଆହୁରି ଭାବିଲେ ଯେ ଶ୍ରେଷ୍ଠ ପୁଅର ଭାଗ୍ୟ ଉପରେ ଏତେ ଜୋର୍ ଦେଲେ ପିଲାଦିନୁ ସେ ଖରାପ ହୋଇଯିବ; ତା' ଛଡ଼ା ଏହାର ଖରାପ ପ୍ରଭାବ ପଡ଼ିବ ବଡ଼ପୁଅ ଉପରେ । ସେ ମଧ୍ୟ ନିଜ ଉପରୁ ଆତ୍ମ-ବିଶ୍ୱାସ ହରାଇବ ।

ଏସବୁ କଥା ଭାବି ଧନଗୁପ୍ତ କହିଲେ, "ଶୁଣ ରାମଗୁପ୍ତ, ମୁଁ ବିଦେଶୀ ମହିଳାଟିଏ ବିବାହ କରିଛି । ଏପର୍ଯ୍ୟନ୍ତ ଛୁଆ ପିଲା କିଛି ନାହିଁ । ସେ ଭାରି ଏକାକୀ ଅନୁଭବ କରୁଛି । ତୁମେ ବରଂ କିଛିଦିନ ପାଇଁ ତୁମ ବଡ଼ପୁଅକୁ ଆମ ଘରେ ରହିବାକୁ ଦିଅ ।"

ଯେହେତୁ ଧନଗୁପ୍ତ ଧନରେ ବଡ଼ ଥିଲେ, ତେଣୁ ରାମଗୁପ୍ତ ଖୁସୀରେ ବଡ଼ପୁଅକୁ ପଠାଇଦେଲେ । କିଛିଦିନ ଚାଲିଗଲା । ଦିନେ ରାମଗୁପ୍ତ ଧନଗୁପ୍ତଙ୍କୁ ଦେଖିବାକୁ ଗଲେ, ଧନଗୁପ୍ତ ଖୁବ୍ ଉଦାସ ଦେଖାଯାଉ ଥିଲେ । ରାମଗୁପ୍ତ ଏହାର କାରଣ ପଚାରିଲେ ।

ଧନଗୁପ୍ତ କହିଲେ, "ଦେଖ ବନ୍ଧୁ, ମୁଁ ଉଦାସ ନ ରହିବି ବା କପରି ? ମୁଁ ସମୁଦ୍ରରେ ବାଣିଜ୍ୟ କଲି ଦିନଠାରୁ ଆଜି ପର୍ଯ୍ୟନ୍ତ କୌଣସି ଅସୁବିଧା ହୋଇନାହିଁ । କିନ୍ତୁ ଆଜି ଖବର ମିଳିଛି ଯେ ଲକ୍ଷ ଲକ୍ଷ ଟଙ୍କାର ଜିନିଷ ନେଇ ମୋର ଗୋଟିଏ ଜାହାଜ ବୁଡ଼ିଯାଇଛି । ଅବଶ୍ୟ ମୁଁ କାରଣ ଜାଣିନି; ତେବେ ଏକଥା ସତ ଯେ ତୁମ ପୁଅ ମୋ ଘରେ ପାଦ ଦେବା ଦିନରୁହିଁ ମୋର ସବୁଆଡ଼େ ଏପରି ଲୋକସାନ ହେଉଛି ।"

ଏକଥା ଶୁଣି ରାମଗୁପ୍ତଙ୍କ ମନ ଟିକିଏ କଷ୍ଟ ହେଲା; ତଥାପି ସେ ବନ୍ଧୁଙ୍କ ପ୍ରତି ସହାନୁଭୂତି ପ୍ରକାଶ କଲେ ।

ଆହୁରି କିଛିଦିନ ପରେ ଦିନେ ସନ୍ଧ୍ୟାରେ ଧନଗୁପ୍ତ ଖୁବ୍ ଚିନ୍ତିତ ହୋଇ ଆସି ରାମଗୁପ୍ତଙ୍କ ଘରେ ପହଞ୍ଚିଲେ । ରାମଗୁପ୍ତ ବ୍ୟସ୍ତ ହୋଇ ତାଙ୍କର ଚିନ୍ତାର କାରଣ ପଚାରିଲେ ।

ଧନଗୁପ୍ତ କହିଲେ, "ଏଥର ଧନ ହାନି

ଅପେକ୍ଷା ଆହୁରି କିଛି ଖରାପ ଘଟିଛି । ମୋ ସ୍ତ୍ରୀକୁ ଏପରି ଏକ ରୋଗ ଧରିଛି ଯାହାକୁ ବୈଦ୍ୟମାନେ ନିର୍ଣ୍ଣୟ କରି ପାରୁ ନାହାନ୍ତି । ଦେଖ ରାମଗୁପ୍ତ, ତୁମର ବଡ଼ପୁଅ ଯୋଗୁ ତୁମର ଏପରି କିଛି କେବେ ହୋଇଥିଲା ? କାରଣ ସେ ମୋ ଘରକୁ ଆସିବା ପରଠାରୁ ଏକ ପରେ ଏକ ବିପଦ ଆସି ପହଞ୍ଚୁଛି ।"

ଧନଗୁପ୍ତଙ୍କର ଏ ସମସ୍ତ କଥା ଶୁଣି ରାମଗୁପ୍ତ କ୍ରୋଧରେ ଫାଟିପଡ଼ି କହିଲେ, "ମୋ ପୁଅ ଏପର୍ଯ୍ୟନ୍ତ କୌଣସି ବିପଦ ମୋ ଘରକୁ ଆଣିନାହିଁ । ତୁମେହିଁ ନିଜେ ତାକୁ ତୁମ ଘରକୁ ନେଇଯିବା କଥା ପ୍ରସ୍ତାବ ଦେଲ । ବର୍ତ୍ତମାନ ତୁମର ଯାହା କ୍ଷତି ହେଲା ବା ବିପଦ ପଡ଼ିଲା, ତା'ର କାରଣ ନିଜେ ଅନୁସନ୍ଧାନ ନ କରି ମୋ ପୁଅ ଉପରେ ପକାଇବାଟା ତୁମର ସମ୍ପୂର୍ଣ୍ଣ ଅନ୍ଧବିଶ୍ୱାସ । ତୁମେ ତାକୁ ଶୀଘ୍ର ମୋ ଘରକୁ ପଠାଇଦିଅ ।" ରାମଗୁପ୍ତଙ୍କ ମୁହଁରୁ ଏକଥା ଶୁଣି ଧନଗୁପ୍ତ ଖୁସୀ ହୋଇଯାଇ କହିଲେ, "ହଁ, ଠିକ୍ କଥା । ମୁଁ ବି ସେଇକଥା ଭାବୁଥିଲି । ତୁମେ ତୁମ ପୁଅକୁ ଘରକୁ ଫେରାଇଆଣ । ବର୍ତ୍ତମାନ ମୋ ସହିତ ଆସ; ଆଉ ଡେରି କାହିଁକି ?"

ରାମଗୁପ୍ତ ଧନଗୁପ୍ତଙ୍କ ସହିତ ଘରକୁ ଯାଇ ଦେଖିଲେ ଘର ଧନ ରତ୍ନରେ ପୂର୍ଣ୍ଣ । ଚିନ୍ତାର କୌଣସି କାରଣ ନାହିଁ । ସମସ୍ତେ ଆନନ୍ଦରେ ରହିଛନ୍ତି । ଧନଗୁପ୍ତର ସ୍ତ୍ରୀ ଅତି ମୂଲ୍ୟବାନ୍



ଅଳଙ୍କାର ଓ ଶାଢ଼ି ପିନ୍ଧି ସାକ୍ଷାତ୍ ଲକ୍ଷ୍ମୀ ପରି ଦେଖାଯାଉଛନ୍ତି । ସେ ହସି ହସି ରାମଗୁପ୍ତଙ୍କୁ କୁଶଳ ପ୍ରଶ୍ନ କଲେ ।

ଅଧିକ ଆଶ୍ଚର୍ଯ୍ୟର କଥା ହେଉଛି ଯେ ରାମଗୁପ୍ତଙ୍କ ବଡ଼ପୁଅ ଆନନ୍ଦରେ ଡେଉଁଛି ଖେଳୁଛି । ମନେ ହେଉଛି ଘରଟା ଯେପରି ତା'ର । ହେଲେ ନିଜ ବାପାକୁ ଦେଖି ଡରିଯାଇ ଗୋଟିଏ କୋଣରେ ଯାଇ ଚୁପ୍ ହୋଇ ବସିଲା । ଏସବୁ ଦେଖି ରାମଗୁପ୍ତ ଅବାକ୍ ହୋଇ ଧନଗୁପ୍ତଙ୍କୁ ଚାହିଁଲେ । ସେ ବୁଝିପାରିଲେ ନାହିଁ ଯେ ଧନଗୁପ୍ତଙ୍କୁ କ'ଣ କୁହାଯିବ ।

ଧନଗୁପ୍ତ କହିଲେ, "ରାମଗୁପ୍ତ, ତୁମେ ବୋଧେ କିଛି ବୁଝିପାରୁନାହଁ । ବରଂ ବୁଝିବାକୁ ଚେଷ୍ଟା କର ଓ ମନେରଖ ଯେ ମୋର ବାଣିଜ୍ୟରେ କୌଣସି କ୍ଷୟକ୍ଷତି ହୋଇଥିଲେ ମୁଁ ଏପରି ମୂର୍ଖ ନୁହେଁ ଯେ ତା'ର କାରଣ ତୁମ ପୁଅ ବୋଲି ଭାବିଥା'ନ୍ତି । ତୁମେ ତୁମର ସାନପୁଅ ବିଷୟରେ ସମସ୍ତଙ୍କୁ କହିବୁଲୁଛ କି ସେ ତୁମ ଭାଗ୍ୟର ଦେବତା । ଏକଥା ଶୁଣି ତୁମ ବଡ଼ପୁଅର ମନ କ'ଣ ହେବ ସେକଥା କେବେ ଭାବିଛ ? ତା' ଛଡ଼ା ସେପରି କହିବା ଦ୍ୱାରା ସାନପୁଅ ମନରେ ଯେଉଁ ଅହଂଭାବ ଜନ୍ମିବ, ସେ ବିଷୟରେ କିଛି କେବେ ଭାବିଛ ? ଏସବୁ କାରଣରୁ ମୁଁ ତୁମ ଭିତରେ ଜ୍ଞାନୋଦୟ କରିବା ଉଦ୍ଦେଶ୍ୟରେ ତୁମକୁ ଦୁଇଥର ମିଛ କହିଛି । ତୁମେ ଖରାପ ଭାବିବ ନାହିଁ । ମନେକର କାଲି ତୁମର କିଛି ଧନ କ୍ଷତି ହୋଇଯିବ ତାହେଲେ ତୁମ ସାନପୁଅ ଯୋଗୁ ହେବ ? ସେ କ'ଣ ଭାବିବ ? ତୁମେ ଯେ ମୋ ଭିତରେ ଅନ୍ଧବିଶ୍ୱାସକୁ ବୁଝିପାରିଲ, ସେଇତ ବଡ଼ କଥା; ମୋର ଲକ୍ଷ୍ୟ ସିଦ୍ଧ ହୋଇଛି । ଏବେ ତୁମ ପୁଅକୁ ତୁମେ ନେଇଯାଇପାର ।"

ଏସବୁ ଶୁଣି ରାମଗୁପ୍ତ ଲଜ୍ଜାରେ ମୁହଁ ତଳକୁ କରି କହିଲେ, "ଏବେ ମୁଁ ସବୁକଥା ଭଲ ବୁଝିଗଲି । ନିଜକୁ ବଦଳାଇବା ପାଇଁ କିଛି ସମୟ ଲାଗିପାରେ । ଆଉ କିଛି ଦିନ ସେ ତୁମ ଘରେ ରହୁ । ମନେହୁଏ ସେ ତୁମ ଘରେହିଁ ଅଧିକ ଖୁସୀରେ ଅଛି ।"






ମହିଷାସୁରକୁ ବଧ କରି ଦେବୀ ଅନ୍ତର୍ହିତା ହୋଇଗଲେ । ରାକ୍ଷସପୁରୀର ସିଂହାସନ ଦେବଗଣଙ୍କ କରତଳଗତ ହେଲା । ସେମାନେ ତହିଁରେ ଶତ୍ରୁଘ୍ନ ନାମକ ସୂର୍ଯ୍ୟବଂଶର ଯୁବକଙ୍କୁ ଅଭିଷିକ୍ତ କରି ସ୍ୱର୍ଗରାଜ୍ୟକୁ ପ୍ରତ୍ୟାବର୍ତ୍ତନ କଲେ । ଶତ୍ରୁଘ୍ନ ଆଦର୍ଶରାଜା ରୂପେ ଶାସନ କରିବାକୁ ଲାଗିଲେ ।

କିଛିଦିନ ସସାଗରାଧରାରେ ଶାନ୍ତି ବିରାଜମାନ କଲା । କିନ୍ତୁ ଶୁମ୍ଭ ଓ ନିଶୁମ୍ଭ ନାମକ ଦୁଇ ଦାନବ-ଭାଇ ରସାତଳରେ ଅନ୍ନଜଳ ପର୍ଯ୍ୟନ୍ତ ତ୍ୟାଗ କରି କଠୋର ତପସ୍ୟା କରିବାକୁ ଲାଗିଲେ । ସେମାନଙ୍କ ତପସ୍ୟାରେ ବ୍ରହ୍ମା ଆସି ପ୍ରତ୍ୟକ୍ଷ ହୋଇ ବର ଯାଚିଲେ ।

“ଭଗବାନ୍ ! ଆମକୁ ଅମର କରି ଦିଅନ୍ତୁ !” ଦୁଇ ଦାନବ ପ୍ରାର୍ଥନା କଲେ ।

“ସେ ବରଦାନ ସମ୍ଭବ ନୁହେଁ । ଅନ୍ୟ କୌଣସି ବର ମାଗ ।” ବ୍ରହ୍ମା କହିଲେ ।

“ତେବେ ଏପରି ବର ଦିଅ, ଯାହା ବଳରେ ଆମକୁ କୌଣସି ପୁରୁଷ ମାରି ପାରିବ ନାହିଁ ।” ସେମାନେ କହିଲେ । ବ୍ରହ୍ମା “ତଥାସ୍ତୁ” କହି ଅଦୃଶ୍ୟ ହୋଇଗଲେ ।

ଆନନ୍ଦିତ ହୋଇ ଦୁଇ ଦାନବଭାଇ ଭୃଗୁ ମହାମୁନିଙ୍କୁ ପୁରୋହିତ ରୂପେ ନିଯୁକ୍ତ କଲେ । ଶୁଭ ମୁହୂର୍ତ୍ତରେ ଶୁମ୍ଭର ରାଜ୍ୟାଭିଷେକ ଅନୁଷ୍ଠାନ ହୋଇଗଲା । ଶୁମ୍ଭ ଅନୁଜ ନିଶୁମ୍ଭକୁ ନିଜର ମନ୍ତ୍ରୀ ରୂପେ ନିଯୁକ୍ତ କଲା । ଚଣ୍ଡ ଏବଂ



ମୁଣ୍ଡ ନାମକ ଦୁଇ ମହା ଦାନବ-ବୀର ହେଲେ ତା'ର ସେନାପତି । ପାତାଳ ପୁରୀର ଦୁଇ ରାକ୍ଷସ ବୀର ଧୂମ୍ରଲୋଚନ ଓ ରକ୍ତବୀଜ ସେମାନଙ୍କର ଅସଂଖ୍ୟ ଅନୁଗତଙ୍କୁ ଧରି ଆସି ଶୁମ୍ଭର ଦରବାରରେ ଅମାତ୍ୟ ରୂପେ ରହିଲେ । ରକ୍ତବୀଜର ବିଶେଷତ୍ୱ ହେଲା, ଯୁଦ୍ଧ କ୍ଷେତ୍ରରେ ଶତ୍ରୁ ପକ୍ଷର ଆକ୍ରମଣ ଯୋଗୁଁ ଯଦି ତା' ଦେହରୁ ବିନ୍ଦୁଏ ରକ୍ତ ତଳେ ପଡ଼ିବ, ତେବେ ସେଥିରୁ ତାହାରି ଭଳି ଗୁଡ଼ାଏ ରାକ୍ଷସ ଉଦ୍ଭୂତ ହେବେ ।

ଦିଗବିଦିଗରୁ କେତେ ରାକ୍ଷସ ଆସି ଶୁମ୍ଭର ଆନୁଗତ୍ୟ ସ୍ୱୀକାର କଲେ ।

ଥରେ ନିଶୁମ୍ଭର ଇଚ୍ଛା ହେଲା, ସେ ଇନ୍ଦ୍ର ସହ ଲଢ଼ିବ । ସେ ହଠାତ୍ ଯାଇ ଅମରାବତୀ ଆକ୍ରମଣ କଲା । ଇନ୍ଦ୍ର ଦେବଗଣଙ୍କୁ ଡକାଇ ତା'ର ପ୍ରତିରୋଧ କଲେ । ନିଶୁମ୍ଭ ଇନ୍ଦ୍ରଙ୍କ ବଜ୍ର ପ୍ରହାରରେ ଚେତନାଶୂନ୍ୟ ହୋଇ ପଡ଼ିଗଲା । ଶୁମ୍ଭ ଏ ସମ୍ବାଦ ପାଇ ଅକ୍ଷୌହିଣୀ ରାକ୍ଷସ ବାହିନୀ ଧରି ପ୍ରଚଣ୍ଡ ଆକ୍ରମଣରେ ଇନ୍ଦ୍ରଙ୍କୁ ପରାଭୂତ କରି ଦେବପୁରୀ ଅଧିକାର କରିନେଲା । ଅଷ୍ଟଦିଗମାନଙ୍କୁ ନିଜ ଅଧୀନ କରି ତ୍ରିଲୋକ ଉପରେ ସେ ଶାସନ କରିବାକୁ ଲାଗିଲା । ନନ୍ଦନବନରେ ଅପ୍ସରାମାନଙ୍କ ନୃତ୍ୟଗୀତ ଉପଭୋଗ କରି ସେ ସମୟ ଅତିବାହିତ କଲା ।

ପୁରୁଣା ଦିଗପାଳମାନଙ୍କୁ ତଡ଼ି ସେ କ୍ରମେ ନିଜର ଅନୁଗତ ରାକ୍ଷସମାନଙ୍କୁ ସେମାନଙ୍କ ସ୍ଥାନରେ ନିଯୁକ୍ତ କରିବାକୁ ଲାଗିଲା ।

ଦିଗପାଳଗଣ ତଥା ଅନ୍ୟ ଦେବଗଣ ବଣ ଜଙ୍ଗଲରେ ଉଦ୍‌ବାସ୍ତୁ ରୂପେ ବୁଲି ଅନେକ କଷ୍ଟ ସହିଲେ । ଏହିପରି ଭାବରେ ହଜାରେ ବର୍ଷ ବିତିଗଲା । ଦେବଗଣ ସେମାନଙ୍କ ଦୁର୍ଦ୍ଦଶାର ଅବସାନ କିପରି ହେବ, ସେକଥା ଠଉରାଇ ପାରୁ ନ ଥା'ନ୍ତି ।

ଦିନେ ଇନ୍ଦ୍ର ଏବଂ ଆଉ କେତେଜଣ ଦେବତା ଯାଇ ଦେବଗୁରୁ ବୃହସ୍ପତିଙ୍କୁ ଭେଟି କହିଲେ, "ମହାତ୍ମା ! ଏଥର ଆମକୁ ଏ ଅପମାନଜନକ

ପରିସ୍ଥିତିରୁ ଉଦ୍ଧାର କରିବାର କୌଣସି ଉପାୟ ବାହାର କରନ୍ତୁ । ମନ୍ତ୍ରତନ୍ତ୍ର, ଯାଗ ହୋମ, ଯେ କୌଣସି ଉପାୟରେ ହେଉ ନା କାହିଁକି, ଆମ ଭାଗ୍ୟ ପରିବର୍ତ୍ତନ କରିବାର ପନ୍ଥା ସ୍ଥିର କରନ୍ତୁ ।"



ଦେବଗୁରୁ କହିଲେ, "ହେ ଇନ୍ଦ୍ର, ମନ୍ତ୍ର ତନ୍ତ୍ର ତଥା ହୋମ ଯାଗ ତ ତୁମ୍ଭମାନଙ୍କୁ ତୁଷ୍ଟ କରିବା ନିମନ୍ତେ ହୋଇଥାଏ । ସେସବୁ ପୁଣି ତୁମ୍ଭ-ମାନଙ୍କ ବିପଦବେଳେ କି କାମ ଦେବ ? ମୁଁ ବହୁତ ଭାବିଛି । ତୁମ୍ଭମାନଙ୍କ ଆଗରେ ଏକମାତ୍ର ଉପାୟ ହେଲା ଜଗଜ୍ଜନନୀଙ୍କ ଶରଣ ପଶିବା । ସେ ମହିଷାସୁରକୁ ବଧ କରିଥିଲେ । ସେ ଇଚ୍ଛା କଲେ ଏ ଦୁଇ ଦୁରନ୍ତ ଦାନବକୁ ବି ନିପାତ କରି ପାରିବେ ।"

ଦେବଗୁରୁ ଦେବତାମାନଙ୍କୁ ଦେବୀ ସ୍ତୋତ୍ର ଶିଖାଇଦେଲେ । ହିମାଳୟ ଯାଇ ଦେବଗଣ ସେହି ସ୍ତୋତ୍ର ଯୋଗେ ଦେବୀଙ୍କୁ ଆବାହନ କରିବାରେ ନିମଗ୍ନ ରହିଲେ ।

ଯଥାସମୟରେ ଦେବୀ ସେମାନଙ୍କ ଆରା-ଧନାରେ ଆକର୍ଷିତା ହୋଇ ଦିବ୍ୟ ରୂପରେ ସେମାନଙ୍କ ଆଗରେ ଆବିର୍ଭୂତା ହେଲେ ଓ ପଚାରିଲେ, "ତୁମର କ'ଣ ପ୍ରୟୋଜନ ?"

ଯୋଡ଼ହସ୍ତରେ ଦେବଗଣ ଏହି ନିବେଦନ କଲେ, "ମା ! ଆମକୁ ବିପଦରୁ ଉଦ୍ଧାର କର । ହଜାର ବର୍ଷ କାଳ ଆମ୍ଭେମାନେ ଶୁମ୍ଭ ଓ ନିଶୁମ୍ଭ ନାମକ ଦାନବଭ୍ରାତାଙ୍କ ଦ୍ୱାରା ବିତାଡ଼ିତ ହୋଇ ବହୁ ଧରଣର ହିନସ୍ତା ଭୋଗିଲୁଣି । ଆମର ଏତିକି ଉପଲବ୍ଧି ହୋଇଛି ଯେ ବର୍ତ୍ତମାନ ତୁମ ସହାୟତା ବିନା ଆମର ଗତ୍ୟନ୍ତର ନାହିଁ । ଶୁମ୍ଭ ନିଶୁମ୍ଭର ରାକ୍ଷସବାହିନୀ ଏତେ ବଳଶାଳୀ ଯେ ଆମର ସମବେତ ଦେବଶକ୍ତି ସେମାନଙ୍କର ବିଶେଷ କୌଣସି କ୍ଷତି କରିପାରିବ ନାହିଁ । ଆପଣ ଯେପରି ଦିନେ ମହିଷାସୁରକୁ ସଂହାର କରିଥିଲେ, ସେହିପରି ଏମାନଙ୍କୁ ମଧ୍ୟ ନିପାତ କରନ୍ତୁ ।"

ଦେବତାମାନଙ୍କ କାତରପୂର୍ଣ୍ଣ ନିବେଦନରେ



ବଗଳତା ହୋଇ ଦେବୀ କହିଲେ, "ଆଚ୍ଛା, ତୁମ୍ଭେମାନେ ବିଚଳିତ ହୁଅ ନାହିଁ । ମୁଁ ସେ ପ୍ରବଳ ରାକ୍ଷସବର୍ଗଙ୍କୁ ନିଧନ କରି ତୁମ୍ଭମାନଙ୍କୁ ତୁମ ହୃତ ରାଜ୍ୟରେ ପୁନର୍ବାର ଅଧିଷ୍ଠିତ କରିବି ।"

ଏହା ପରେ ଦେବୀ ନିଜ ଭିତରୁ ଏକ ନୂତନ ସତ୍ତା ବାହାର କରିଆଣିଲେ । ସେ ସତ୍ତା ଥିଲା ଋଷିଣୀକୃତ । କୌଶିକୀ ନାମରେ ତାହା ନାମିତ ହେଲା । ସେହି ଶକ୍ତିକୁ ନିଜ କକ୍ଷରେ ରଖି ଦେବୀ ସିଂହାରୂଢ଼ା ହୋଇ ରାକ୍ଷସମାନଙ୍କୁ ଭେଟିବାକୁ ଅଗ୍ରସର ହେଲେ ।

ରାକ୍ଷସ-ଅଧିକୃତ ନଅର ପାର୍ଶ୍ୱସ୍ଥ ଉଦ୍ୟାନରେ ଥାଇ ଦେବୀ ଗୋଟିଏ ସଙ୍ଗୀତ ଗାନ କଲେ । ସେ ସଙ୍ଗୀତର ମୂର୍ଚ୍ଛନାରେ ଚତୁର୍ଦ୍ଦିଗ ମୋହିତ ହେଲା । ମୃଗ ଓ ପକ୍ଷୀକୂଳ ଆଶ୍ଚର୍ଯ୍ୟ ହୋଇ ଦେବୀଙ୍କ ପାଖକୁ ଆସି ତାହା ଶ୍ରବଣ କରିବାକୁ ଲାଗିଲେ । ରାକ୍ଷସ ଚଣ୍ଡ ଓ ମୁଣ୍ଡ ସେତେବେଳେ ଉଦ୍ୟାନରେ ବିହାର କରିବାକୁ ଆସୁଥିଲେ । ସେ ମଧୁର ସଙ୍ଗୀତ ଶୁଣି ସେମାନେ ଦେବୀଙ୍କ ପାଖକୁ ଆସି ତାଙ୍କୁ ତଥା ତାଙ୍କ କକ୍ଷରେ ଥିବା କୌଶିକୀଙ୍କୁ ଦେଖି ସେ ଦୁହିଁଙ୍କ ବିସ୍ମୟର ସୀମା ରହିଲା ନାହିଁ । ତତ୍‌କ୍ଷଣାତ୍ ସେମାନେ ଶୁମ୍ଭକୁ ଭେଟି କହିଲେ, "ମହାରାଜ, ସିଂହ ଉପରେ ବସି ଜଣେ ଅପରୂପା ସ୍ତ୍ରୀ ପାର୍ଶ୍ୱବର୍ତ୍ତୀ ଉଦ୍ୟାନରେ ଗାନରତା । ତାଙ୍କ ରୂପର ତୁଳନା ଯେପରି ତ୍ରିଲୋକରେ ମିଳିବା ସମ୍ଭବ ନୁହେଁ, ସେହିପରି ତାଙ୍କ ସଙ୍ଗୀତର ମାଧୁର୍ଯ୍ୟର ବି ତୁଳନା ନାହିଁ । ପଶୁପକ୍ଷୀ ସ୍ତବ୍ଧ ହୋଇ ତାଙ୍କ ସଙ୍ଗୀତ ଶୁଣୁଛନ୍ତି । ସେ ନାରୀ ସହ ଆଉ ଜଣେ ନାରୀ ମଧ ରହିଛି । ଅବଶ୍ୟ ତା' କଥା କହିବା ଦରକାର ନାହିଁ । ତେବେ ସେ ଗାନରତା ରୂପବତୀ ନାରୀ ଯେ ଆପଣଙ୍କ ଭଳି ତ୍ରିପୁର ଜୟୀ ସମ୍ରାଟ୍‌ଙ୍କର ମହିଷୀ ହେବାକୁ ଯୋଗ୍ୟ, ଏଥିରେ ସନ୍ଦେହ ନାହିଁ । ଆପଣ ବର୍ତ୍ତମାନ ଯାଇ ତାଙ୍କୁ ବିବାହ ପ୍ରସ୍ତାବ ଦିଅନ୍ତୁ ଓ ପ୍ରାସାଦକୁ ପାଖେଟି ଆଣନ୍ତୁ ।"

ଶୁମ୍ଭ ଉତ୍ସାହଭରେ ସୁଗ୍ରୀବ ନାମକ ନିଜର ଜଣେ ଅନୁଗତଙ୍କୁ ତତ୍‌କ୍ଷଣାତ୍ ଏହି ନିର୍ଦ୍ଦେଶ ଦେଲା, "ତୁମେ ଯାଇ ସେ ନାରୀକୁ ମୋ ତରଫରୁ ଅଭିବାଦନ କରି ଏଠାକୁ ନେଇ ଆସ । ଚଣ୍ଡ ମୁଣ୍ଡଙ୍କ ବର୍ଣ୍ଣନା ଯଦି ଆଂଶିକ ସତ୍ୟ ହୋଇଥିବ, ତେବେ ମୋର ତାଙ୍କୁ ବିବାହ କରିବାରେ



କୌଣସି ମାତ୍ର ଆପତ୍ତି ନାହିଁ, ଯାଅ ।"

ସୁଗ୍ରୀବ ସଙ୍ଗେ ସଙ୍ଗେ ଯାଇ ଉଦ୍ୟାନରେ ପହଞ୍ଚିଲା ଏବଂ ସିଂହାରୂଢ଼ା ଦେବୀଙ୍କୁ ପ୍ରଣାମ କରି କହିଲା, "ମା, ଆପଣ ପ୍ରବଳ ପ୍ରତାପୀ ସମ୍ରାଟ୍ ଶୁମ୍ଭଙ୍କ ନାମ ନିଶ୍ଚୟ ଶୁଣିଥିବେ । ସେ ଯେପରି ବଳବାନ୍, ସେହିପରି ଦେଖିବାକୁ ସୁନ୍ଦର । ସେ ଆପଣଙ୍କ କଥା ଶୁଣି ମୋତେ ଦୂତ ରୂପେ ପଠାଇଛନ୍ତି । ଆପଣଙ୍କୁ ସେ ପତ୍ନୀ ରୂପେ ବରଣ କରିବାକୁ ପ୍ରସ୍ତୁତ । ଆଶା କରେ ଆପଣ ସାଦରେ ଏ ପ୍ରସ୍ତାବ ସ୍ୱୀକାର କରିନେବେ ।"

ଦେବୀ ମୃଦୁ ହାସ୍ୟ କରି କହିଲେ, "ଦୂତ ! ତୁମ୍ଭ ସମ୍ରାଟ୍‌ଙ୍କୁ କୁହ କି ସେ ଦେବତାମାନଙ୍କୁ ହରାଇଥିବା କଥା ମୋର କର୍ଣ୍ଣଗୋଚର ହୋଇଛି । ମୁଁ ଏଇଆ ସ୍ଥିର କରିଛି ଯେ ମୋତେ ଯିଏ ହରାଇଦେବ, ମୁଁ ତାକୁହିଁ ବରି ନେବି । ସେ ଚାହିଁଲେ ମୋ ସହ ଯୁଦ୍ଧ କରିପାରନ୍ତି । ବଳ ଥିଲେ ସେ ଜିତିବେ ଓ ତେଣିକି ବିବାହ କଥା ବିଚାର କରି ହେବ । ଯାଅ ।"

ସୁଗ୍ରୀବ ଜିଭ କାମୁଡ଼ିପକାଇ କହିଲା, "ମା, ଆପଣ ବୋଧହୁଏ କ'ଣ କହୁଛନ୍ତି ନିଜେ ଜାଣି ନାହାନ୍ତି । ରାକ୍ଷସରାଜ ଶୁମ୍ଭର ନାମ ଶୁଣିଲେ ମହା ମହା ବୀର ଭୟରେ ଥରିଉଠନ୍ତି । ଆପଣ ତାଙ୍କ ସହ ଯୁଦ୍ଧ କରି ତାଙ୍କୁ ହରାଇବାର ପ୍ରଶ୍ନ ଆସୁଛି କାହିଁ ? ଆପଣ ମୋ ପରାମର୍ଶ ଗ୍ରହଣ କରି ଯୁଦ୍ଧର ଅଭିପ୍ରାୟ ତ୍ୟାଗ କରି ସୁଧାର ବ୍ୟବହାର କରନ୍ତୁ । ତାଙ୍କୁ ବିଭା ହେବାକୁ ରାଜି ହୋଇଯାଆନ୍ତୁ ।"

ଦେବୀ କହିଲେ, "ବତ୍ସ ଦୂତ ! ତୁମ ସହ ତର୍କ କରିବାର ଅଭିପ୍ରାୟ ମୋର ନାହିଁ । ତୁମ୍ଭ ରାଜା ଯଦି ଯୁଦ୍ଧ କରିବାକୁ ଭୟ କରୁଛନ୍ତି, ତେବେ ସେ ସ୍ୱର୍ଗ ଓ ମର୍ତ୍ତ୍ୟଲୋକ ଛାଡ଼ି ନିଜ ଘର ରସାତଳକୁ ସପରିବାରେ, ସବାନ୍ଧବେ ଚାଲି ଯାଆନ୍ତୁ । ମୁଁ ତାଙ୍କର କୌଣସି ଅନିଷ୍ଟ କରିବି ନାହିଁ, ଏ ପ୍ରତିଶ୍ରୁତି ଦେଉଛି ।"

ଦେବୀଙ୍କ ମୁହଁରୁ ଏକଥା ଶୁଣି ସୁଗ୍ରୀବ ସ୍ତମ୍ଭୀଭୂତ ହୋଇ ରହିଲା । ଏଣେ ଦେବୀଙ୍କୁ



ଦ୍ୱିତୀୟ ଥର କିଛି କହିବାକୁ ତା'ର ସାହସ ହେଉ ନ ଥାଏ, ତେଣେ ଦେବୀଙ୍କ ବକ୍ତବ୍ୟ ଶୁମ୍ଭ ଆଗରେ ଯାଇ କିପରି କହିବ, ତାହା ମଧ୍ୟ ଠଉରାଇପାରୁ ନ ଥାଏ । ଶେଷରେ ସେ ଯେତେବେଳେ ଶୁମ୍ଭକୁ ଭେଟିଲା, ସେତେବେଳକୁ ସେ ଦିଶୁଥାଏ ପାଗଳ ଭଳି ।

ଶୁମ୍ଭ ସବୁ ଶୁଣି ସାନଭାଇ ନିଶୁମ୍ଭକୁ କହିଲା, "ଘଟଣା ରହସ୍ୟମୟ ମନେ ହୁଏ । ଜଣେ ନାରୀ, ଆଉ ଗୋଟିଏ ନାରୀ ସହ ଆସି ଆମ ପ୍ରତି ଯୁଦ୍ଧାହ୍ୱାନ ଦେଉଛି ! ତୁମେ ଯାଇ ତାକୁ ଭେଟିବ ନା ମୁଁ ଯିବି ?"

"ଭାଇ ! ତୁମେ ଯିବା କି ମୁଁ ଯିବା ଦରକାର ନାହିଁ । ଧୂମ୍ରଲୋଚନକୁ ପଠାଇଦିଅ । ସେ ଯାଇ ନାରୀଟିକୁ ଧରି ନେଇଆସିବ । ତୁମ ଆଗକୁ ଆସିବା ମାତ୍ରେ ସେ ତୁମକୁ ପତି ରୂପେ ବରଣ କରିବ ।" ନିଶୁମ୍ଭ କହିଲା ।

ଏ ପରାମର୍ଶ ଶୁମ୍ଭ ମନକୁ ପାଇଲା । ସେ ଧୂମ୍ରଲୋଚନକୁ ଡକାଇ ସବୁ କଥା କହି ଆଦେଶ ଦେଲା, "ତୁମେ ସେ ସୁନ୍ଦରୀ ସହ ଥିବା ସ୍ତ୍ରୀଲୋକଟିକୁ ମାରିଦେଇ ପାର । କିନ୍ତୁ ସୁନ୍ଦରୀଟିକୁ ବନ୍ଦିନୀ କରି ଆଣ । ତା' ପ୍ରତି ଅତ୍ୟନ୍ତ ଭୟଙ୍କର ଅସ୍ତ୍ର ପ୍ରୟୋଗ କରିବ ନାହିଁ । ଦେଖିବ, ତୁମ ଅସାବଧାନତା ହେତୁ ସେ ଯେପରି ପ୍ରାଣ ନ ହରାଏ ।"

ଧୂମ୍ରଲୋଚନ ସସୈନ୍ୟ ଉଦ୍ୟାନ ଭିତରକୁ ଯାଇ ପ୍ରଥମେ ଯୁଦ୍ଧ ନ କରି ତା' ପ୍ରଭୁର ପ୍ରେମ ସନ୍ଦେଶ ଦେଲା । ସେତେବେଳକୁ କୌଶିକୀ କାଳିକା ରୂପ ଗ୍ରହଣ କରିଥା'ନ୍ତି । ସେ କହିଲେ, "ମୂର୍ଖ ! ତୋ ସହ ଛନ୍ଦ କପଟ କରିବା ଆମ ଉଦ୍ଦେଶ୍ୟ ନୁହେଁ । ଶୁମ୍ଭ ନିଶୁମ୍ଭକୁ ବଧ କରିବା ଉଦ୍ଦେଶ୍ୟରେହିଁ ମହାଦେବୀ ଏଠାକୁ ଆସିଛନ୍ତି । ତୁମ ପ୍ରଭୁକୁ ଯାଇ କୁହ, ସେ ଶରଣ ପଶୁ ; ନ ହେଲେ ଯୁଦ୍ଧ କରୁ । ଏଭଳି ନିର୍ଲଜ୍ଜ ପ୍ରେମ ସନ୍ଦେଶ ଶୁଣିବାକୁ କାହାରି ଆଗ୍ରହ ନାହିଁ ।"

ଧୂମ୍ରଲୋଚନ କ୍ରୁଦ୍ଧ ତଥା ବିସ୍ମିତ ହୋଇ କହିଲା, "ତୁମେ ମୋ ପ୍ରଭୁକୁ ଅପମାନ କରି କଥା

କହିବ, ଏଡ଼େ ସାହସ ? ତୁମର ବିନାଶ କାଳ ଉପସ୍ଥିତ । ମୋ ସହିତ ଯୁଦ୍ଧ କର ।"

ଏହା କହି ଧୂମ୍ରଲୋଚନ କାଳିକାଙ୍କୁ ଆକ୍ରମଣ କରିବା ମାତ୍ରେ କାଳିକା ତାଙ୍କୁ ଧରିପକାଇ ତଳେ କଚାଡ଼ି ମାରିଦେଲେ । ଆଖି ପିଛୁଳାକେ ତା' ସହ ଆସିଥିବା ସୈନ୍ୟମାନେ ବି ମଲେ ।

ଦେବୀ କାଳିକାଙ୍କ କୃତିତ୍ୱରେ ଆନନ୍ଦିତା ହୋଇ ଶଙ୍ଖନାଦ କଲେ । ଆଶ୍ଚର୍ଯ୍ୟ ହୋଇ ଶୁମ୍ଭ ଦୌଡ଼ି ଆସିଲା । ଆସି ଯାହା ଦେଖିଲା, ସେଥିରେ ସେ ନିଜ ଆଖିକୁ ବିଶ୍ୱାସ କରି-ପାରିଲା ନାହିଁ । ଧୂମ୍ରଲୋଚନ ଓ ତା' ଦକ୍ଷ ସୈନ୍ୟବାହିନୀକୁ ଅଚିରେ ନିପାତ କରିପାରିଲା ଭଳି ଏ ନାରୀଦ୍ୱୟ କିଏ ?

ଶୁମ୍ଭ ଏତିକି ବୁଝିଲା ଯେ ତାକୁ ହୁଏତ ସନ୍ଧି କରିବାକୁ ପଡ଼ିବ, ନଚେତ୍ ଯୁଦ୍ଧ କରିବାକୁ ପଡ଼ିବ । ନିଜର ବୀର ସେନାପତିମାନଙ୍କ କଥା ଭାବି ସେ ଆଶାନ୍ୱିତ ହେଲା ଓ ସେମାନଙ୍କୁ ତତ୍‌କ୍ଷଣାତ୍ ଡକାଇଆଣିଲା ।

ପ୍ରଥମେ ଦେବୀଙ୍କ ସହ ଲଢ଼ିଲେ ଚଣ୍ଡ ଓ ମୁଣ୍ଡ । ସେ ଦୁହେଁ ମରିବାର ଦେଖି ଶୁମ୍ଭର ବିସ୍ମୟର ସୀମା ରହିଲା ନାହିଁ । ରକ୍ତବୀଜ ଯୁଦ୍ଧ କରିବା ନିମନ୍ତେ ଡେଇଁପଡ଼ିଲା । ଦେବୀ ଯେମିତି ତାକୁ ଆଘାତ କରିଛନ୍ତି, ତା' ଦେହ ନିଃସୃତ ରକ୍ତ ତଳେ ପଡ଼ି ଶହ ଶହ ରାକ୍ଷସଙ୍କୁ ଜନ୍ମ ଦେବାକୁ ଲାଗିଲା । ଦେବୀ ସେଇଠୁ କାଳିକାଙ୍କୁ କହିଲେ କି ରକ୍ତବୀଜର ରକ୍ତ ତଳେ ନ ପଡ଼ିବା ଚୁହି ।

କାଳିକା ସେହି ମୁହୂର୍ତ୍ତରୁ ରକ୍ତବୀଜ ଦେହରୁ ନିଃସୃତ ରକ୍ତ ପିଇଯିବାକୁ ଲାଗିଲେ । ରକ୍ତ-ବୀଜର ଆଉ ବିଶେଷତ୍ୱ ରହିଲା ନାହିଁ । ସେ ଅଳ୍ପ ସମୟ ଯୁଦ୍ଧ କରି ମଲା ।

କ୍ରମେ ଶୁମ୍ଭ ନିଶୁମ୍ଭର ସବୁ ସେନାପତି ମଲେ । ଅବଶେଷରେ ମଲେ ଦୁଇ ଦୁର୍ଦ୍ଦାନ୍ତ ରାକ୍ଷସ ଭ୍ରାତା ।

ଶୁମ୍ଭ ନିଶୁମ୍ଭ ମରି ଶୋଇବାର ଦେଖି ରାକ୍ଷସ-କୁଳ ଦେବୀଙ୍କ ପାଖରେ ଶରଣ ପଶିଲେ । ଦେବୀ ସେମାନଙ୍କୁ ଅଭୟ ଦେଲେ । ସେମାନେ ପାତାଳପୁରୀକୁ ପଳାଇଗଲେ ।





# ବନ୍ଧୁପ୍ରୀତି !

ଥରେ ଜଣେ ରାଜା ତାଙ୍କ ରାଜ୍ୟରୁ ଚୋର ଡକାୟତ କଠିନ ହସ୍ତରେ ଦମନ କରିବାକୁ ମନସ୍ଥ କଲେ । ନୂଆ ଆଇନ ଜାରି କରି ସେ ଚୋର ଏବଂ ଡାକୁମାନଙ୍କୁ ଦ୍ୱୀପାନ୍ତରଦଣ୍ଡ ଦେଲେ । ଫଳରେ ରାଜ୍ୟରେ କିଛିଦିନ ଭିତରେ ଶୃଙ୍ଖଳା ସ୍ଥାପିତ ହେଲା ।

ଗୋଟିଏ ଗାଁରେ ଭରତସିଂହ ଓ ମୋହନସିଂହ ନାମରେ ଦୁଇ ଚୋର ଥିଲେ । ସେ ଦୁହେଁ ଅନ୍ୟ ଚୋରମାନଙ୍କର ଦୁର୍ଦ୍ଦଶା ଦେଖି ଚୋରି ଛାଡ଼ିଦେବାକୁ ସ୍ଥିର କଲେ ।

"ମୋହନସିଂହ, ମୁଁ ଶୁଣୁଛି ଆମେ ଏ ଅଞ୍ଚଳର ଜମିଦାରଙ୍କ ଘରେ ଦୁଇଜଣ ମୂଲିଆ ଲୋଡ଼ା । ଭାବୁଛି, ସେଇଠାରେ ଯାଇ ଚାକିରି କରିବି ।" ଭରତସିଂହ କହିଲା ।

"ଯଦି ଦୁଇଜଣ ଲୋଡ଼ା, ତେବେ ମୋତେ ବି ସାଥିରେ ନେଇ ଚାଲ ।" ମୋହନସିଂହ କହିଲା ।

ଦୁହେଁ ଯାଇ ଜମିଦାରଙ୍କୁ ଦେଖା କଲେ । ଜମିଦାର ସେମାନଙ୍କ ସୁସ୍ଥ ସବଳ ଚେହେରା ଦେଖି ସେମାନଙ୍କୁ ନିଯୁକ୍ତ ଦେଲେ ଓ କହିଲେ, "ଜଣେ ଗୋରୁ ପଡ଼ିଆକୁ ନେଇଯାଇ ଜଗିବ । ଅନ୍ୟ ଜଣେ ବଗିଚାରେ ପାଣି ଦେବ । ଯିଏ ଯେଉଁ କାମ ଭଲ କରି ପାରିବ, ସେ ସେହି କାମ କରୁ ।"

ପ୍ରଥମ ଦିନ ଭରତସିଂହ ଗୋରୁପଲ ନେଇ ପଡ଼ିଆକୁ ବାହାରିଗଲା । କିନ୍ତୁ ଗୋରୁପଲଙ୍କୁ କିପରି ଅକ୍ତିଆରି ଭିତରେ ରଖିବାକୁ ପଡ଼େ, ସେ ବିଷୟରେ ତା'ର କୌଣସି ଧାରଣା ନ ଥିଲା । ଫଳରେ ଏଣେତେଣେ ଦୌଡ଼ାଦୌଡ଼ି କରି ଗୋରୁମାନଙ୍କୁ ସମ୍ଭାଳିବାରେ ତାକୁ ବହୁତ ପରିଶ୍ରମ କରିବାକୁ ପଡ଼ିଲା । ସଞ୍ଜବେଳକୁ ଗୋରୁ-

(ପଚିଶ ବର୍ଷ ତଳର 'ଚନ୍ଦାମାମା'ରୁ ଆହୃତ)




ଫଳ ଧରି ଫେରିବା ବେଳକୁ ସେ ବହୁତ ହାଲିଆ ହୋଇପଡ଼ୁଥାଏ ।

ଏଣେ ମୋହନସିଂହ ବଗିଚ୍ଚ ଭିତରେ ପାଣି ଦେବାକୁ ଯାଇ ଦେଖିଲା, ସେ କାମ ବଡ଼ କଠିନ । ତାକୁ ବାରମ୍ବାର ପୋଖରୀକୁ ଯାଇ ଗରା ଗରା ପାଣି ଆଣି ଢାଳିବାକୁ ପଡ଼ୁଥାଏ । ଦିନଟି ବଗିଚାର ଅଧା ପାଣି ପାଇବା ବେଳକୁ ସେ ଥକିପଡ଼ୁଥାଏ ।

ସନ୍ଧ୍ୟାବେଳକୁ ଦୁଇବନ୍ଧୁ ଯିଏ ଯାହାର କାମରୁ ଫେରି ଭେଟାଭେଟି ହେଲେ । ପରସ୍ପର ଅନାଇ ଦୁହେଁ ଏପରି ଭାବରେ ମୃଦୁହାସ୍ୟ କଲେ, ଯେପରିକି ଦୁହେଁ ଖୁବ୍ ସୁଖରେ ଦିନଟି ଅତିବାହିତ କରିଛନ୍ତି । ପୋଖରୀକୁ ଯାଇ ଦୁହେଁ ଧୂଆପୋଛା ହୋଇ ଫେରିଲେ ।

ରାତିରେ ଖାଇପିଇ ସାରି ଶୋଇବା ବେଳକୁ ଦୁଇ ବନ୍ଧୁ ନିଜ ନିଜ ଅଭିଜ୍ଞତା ସମ୍ପର୍କରେ ଗପକଲେ । ଭରତସିଂହ କହିଲା, "ଭାଇ ମୋତେ ମୋ କାମ ଖୁବ୍ ସୁଖ ଲାଗୁଛି ଗୋରୁପଲ ମନକୁ ମନ ପଡ଼ିଆରେ ଚରିବୁଲିଲେ । ମୁଁ ଗଛ ତଳ ଛାଇରେ ଆରାମରେ ଶୋଇଗଲି । ସଞ୍ଜ ବେଳକୁ ଗୋରୁପଲ ଆପଣାଛାଏଁ ଫେରିଆସିଲେ । ମୁଁ ଖାଲି ସାଥିରେ ଘରକୁ ଆସିଲି ।"

"ମୋ କାମ ବି ଏତେ ସହଜ ହେବ ବୋଲି ମୁଁ ଜାଣି ନ ଥିଲି । ଗରା ଗରା ପାଣିରେ ସାରା ବଗିଚ୍ଚ ସତେଜ ହୋଇଗଲା । ମୁଁ ଶୋଇ ଶୋଇ ଦିନଟି କଟାଇଦେଲି ।" ମୋହନସିଂହ କହିଲା ।

"ଆଚ୍ଛା ଭାଇ, ଆଗାମୀ କାଲି ଆମେ କାମ ବଦଳ କଲେ କିପରି ହୁଅନ୍ତା ? ତୁମେ ଗୋରୁ ନେଇ ଯାଆନ୍ତ, ମୁଁ ବଗିଚ୍ଚରେ ପାଣି ଦିଅନ୍ତି !" ଭରତସିଂହ ପ୍ରସ୍ତାବ ଦେଲା ।

"ଭଲ କଥା ତାହାହିଁ ହେଉ ।" କହିଲା ମୋହନସିଂହ ।

"ତେବେ ତୁମେ ପଡ଼ିଆକୁ ଖଟିଆ ଖଣ୍ଡିଏ ଧରି ଯାଇଥିବ । ଶୋଇବାକୁ ସୁବିଧା ହେବ ।" କହିଲା ଭରତସିଂହ ।

ପରଦିନ ଉଭୟେ ବୁଝିଲେ ଯେ ଅନ୍ୟ-

ଜଣକ ତାକୁ ଠକୁଛି । ସଞ୍ଜବେଳକୁ ଉଭୟେ ହାଲିଆ ହୋଇ ଫେରଲେ ।

ତେବେ ଭରତସିଂହ ବଗିଚ୍ଚରେ ପାଣି ଦେଉଥିବା ବେଳେ ଲକ୍ଷ୍ୟ କରଥିଲା, ଗୋଟାଏ ଗଛ ମୂଳରେ ମାଟି ଧସିଯିବା ଫଳରେ ଭିତରେ କଛି ଗୋଟାଏ ପୋତା ହୋଇଥିବା ଭଳି ଲାଗୁଛି । ରାତିରେ ମୋହନସିଂହ ଶୋଇପଡ଼ିବା ମାତ୍ରେ ସେ ଗୋଟାଏ ଶାବଳ ଧର ବଗିଚ୍ଚ ଭିତରକୁ ବାହାରଗଲା ଏବଂ ସେ ଗଛ ମୂଳରେ ଖୋଳିବାକୁ ଲାଗିଲା । ଶାବଳ କୌଣସି ଧାତୁ ଜନଷ ଦେହରେ ବାଜିଲା ।

କନ୍ତୁ ହଠାତ୍ ଗୋଟାଏ ଛାୟାମୂର୍ତ୍ତି ଭଳି କଏ ତା ପଛରେ ଠିଆ ହୋଇଥିବାର ଅନୁଭବ କର ସେ ଅନାଇ ଦେଖେତ ମୋହନସିଂହ ତାକୁ ଲକ୍ଷ୍ୟ କରୁଛି ।

"କହୋ, ଏତେ ରାତିରେ ଏଠାରେ ମାଟି ତାଡ଼ୁଛ କଆଁ ?" ମୋହନସିଂହ ପଚ୍ଚରଲା ।

"ଏଠାରେ ମାଟି ସମତଳ ନ ଥିଲା । ରାତିରେ ନଦ ଲାଗିଲା ନାହିଁ । ଭାବଲି ବଗିଚ୍ଚ କାମ କଲେ ଥକଯିବ ଓ ନଦ ଆସିବ ।" ଭରତସିଂହ କୈଫିୟତ୍ ଦେଲା ।

"କନ୍ତୁ ଖନ୍ ଖନ୍ ଶବ୍ଦ ଶୁଭିଲା ଭଳି ଲାଗିଲା !" ମୋହନସିଂହ କହିଲା ।

"ମାଟି ତଳେ ପଥର ଅଛି । ମୋ ଶାବଳ ତାହାର ଦେହରେ ବାଜିଲା ।" ଭରତସିଂହ ଉତ୍ତର ଦେଲା ।





ଭରତସିଂହ ଭୋରବେଳକୁ ଧଡ଼ପଡ଼ ଉଠି-ପଡ଼ ଗଛ ମୂଳକୁ ଯାଇ ବୁଝିଲ, କେହି ମାଟି ତାଡ଼ କନିଷ ବାହାର କରିନେଇଛି । ସେ ଫେରି-ଆସି ଲକ୍ଷ୍ୟ କଲା, ମୋହନସିଂହ ଗୋଡ଼ରେ କାଦୁଅ ଲାଗିଛି । ଅନୁମାନରେ ସେ ପୋଖରୀକୁ ଯାଇ ଚାରି ଆଡ଼କୁ ସତର୍କ ଦୃଷ୍ଟି ଦେଲା । ଠାଏ ଦଳ ଘୁଞ୍ଚି ଯାଇଥିବାର ଦେଖି ସେ ହାତ ବୁଡ଼ାଇ ଗରାଟି ପାଇଗଲା । ସେ ମୁହୂର୍ତ୍ତେ ସମୟ ନଷ୍ଟ ନ କରି ଗରା ଧରି ନିଜ ଗାଁଆଡ଼କୁ ଚାଲିଲା ।

ଅଳ୍ପ ସମୟ ପରେ ମୋହନସିଂହ ନିଦରୁ ଉଠି ଦେଖିଲା ପାଖରେ ଭରତସିଂହ ନାହିଁ । ସେ ଦୌଡ଼ିଯାଇ ପୋଖରୀରେ ପହଞ୍ଚିଲା । ଦେଖିଲା ଗରା ଅଦୃଶ୍ୟ ହୋଇଯାଇଛି । ଭରତ-ସିଂହ ନିଜ ଗାଁମୁହାଁ ଯାଇଥିବା ଅନ୍ଦାଜରେ ସେ ବି ସେଆଡ଼େ ଚାଲିଲା ।

ଅଳ୍ପ ଦୂର ଯିବା ପରେ ସେ ଭରତସିଂହ ଆଗରେ ଯାଉଥିବାର ଦେଖି ସେ ବାଟ ଛାଡ଼ି ବଣ ଭିତର ଦେଇ ତା ଆଗକୁ ଯାଇ ବାଟରେ ନିଜ ଜୋତାରୁ ପଟେ ରଖିଦେଲା । ଶହେ ଗଜ ଆଗରେ ଆଉ ପଟେ ରଖି ଗୋଟାଏ ଗଛ ଚଢ଼ି ବସିଲା ।

ଅଳ୍ପ ସମୟ ପରେ ଭରତସିଂହ ଆସି ପହ-ଞ୍ଚିଲା । ଓ ବାଟରେ ପଟେ ଜୋତା ପଡ଼ିଥିବାର ଦେଖିଲା । ତେବେ ପଟେ ଜୋତା କୌଣସି

"ଚାଲ, ଶୋଇବା ।" ମୋହନସିଂହ ପ୍ରସ୍ତାବ ଦେଲା । ଭରତସିଂହ ଦ୍ୱିରୁକ୍ତି ନ କରି ତାକୁ ଅନୁସରଣ କଲା । ମୋହନସିଂହ ପୁଣି ଶୋଇ-ପଡ଼ିଲେ ସେ ଯାଇ ପୋତା କନିଷ ବାହାର କରିବ ବୋଲି ସ୍ଥିର କଲା । କିନ୍ତୁ ତାକୁହିଁ ପ୍ରଥମେ ନିଦ ଧରିଗଲା ।

ମୋହନସିଂହ କୌତୂହଳବଶତଃ ଉଠିଯାଇ ଗଛ ମୂଳରେ ଖୋଳାଖୋଳି କରି ସୁନାଭର୍ତ୍ତି ଗରାଟିଏ ପାଇଲା । ତା ଆନନ୍ଦ କହିଲେ ନ ସରେ । ଗରାଟିକୁ ଟେକି ଆଣି ପାଖରେ ଥିବା ଗୋଟାଏ ପୋଖରୀ ଭିତରେ ଡୁବାଇ ରଖିଲା । ତାପରେ ଆସି ଶୋଇପଡ଼ିଲା ।

କାମରେ ଆସିବ ନାହିଁ ବୋଲି ସେ ତାକୁ ଛାଡ଼ି ଅଗ୍ରସର ହେଲା । ଅଳ୍ପ ଦୂରରେ ସେ ଦେଖିଲା ଆଉପଞ୍ଚକ ଜୋତା । ସେତେବେଳେ ସେ ହଳକଯାକ ଜୋତା ପାଇବା ନିମନ୍ତେ ଗଣ୍ଠିଟି ତଳେ ଥୋଇ ପ୍ରଥମ ପଞ୍ଚକ ପାଖକୁ ଆସିଲା ।

ତତ୍‌କ୍ଷଣାତ୍ ମୋହନସିଂହ ଗଛରୁ ଓହ୍ଲାଇ-ଆସି ଗଣ୍ଠିଟି ଧରି କ୍ଷିପ୍ର ଗତିରେ ନିଜ ଘରେ ଯାଇ ପହଞ୍ଚିଲା ।

ଭରତସିଂହ ଜୋତା ସଂଗ୍ରହ କରି ଫେରି ଦେଖିବା ବେଳକୁ ଗଣ୍ଠି ନାହିଁ । ତା'ର ବିଶ୍ୱାସ ହେଲା, ମୋହନସିଂହ ଛଡ଼ା ଏ କାମ ଆଉ କେହି କରି ନ ଥିବ । ସେ ଯାଇ ପହଞ୍ଚିଲା ମୋହନସିଂହ ଘରେ ।

ଦେଖିବା ବେଳକୁ ମୋହନସିଂହ ଘରେ କାନ୍ଦବୋବାଳି ପଡ଼ିଛି । "ମୋହନସିଂହ କାହିଁ ?" ଭରତସିଂହ ପଚାରିଲା ।

"ସେ ହାଠାତ୍ ଆମକୁ ଛାଡି ଚାଲିଗଲେ !" ମୋହନସିଂହର ପୁଅ କହିଲା । ଭରତ-ସିଂହ ଅନାଇ ଦେଖିଲା, ମୋହନସିଂହ ମୃତବତ୍ ପଡ଼ିଛି ।

ଭରତସିଂହ କିଛି ସମୟ କାନ୍ଦିବାର ଅଭି-ନୟ କରି କହିଲା, "ବର୍ତ୍ତମାନ ମୁଁ ମୋ ମିତ୍ରର ଅନ୍ତିମ ଇଚ୍ଛା ପୂର୍ଣ୍ଣ କରିବି । ସେ କହିଥିଲା, ମୋ ଆଗରୁ ସିଏ ମଲେ ତା ଦେହକୁ ନେଇ ନଦୀ ଗର୍ଭକୁ ଫୋପାଡ଼ିଦେବାକୁ ହେବ । ନ ହେଲେ ତା'ର ମୁକ୍ତି ହେବ ନାହିଁ ।"

କେହି ବାଧା ଦେବା ପୂର୍ବରୁ ଭରତସିଂହ ମୋହନସିଂହଙ୍କୁ ଉଠାଇନେଇ ନଦୀ ଆଡ଼କୁ ଦୌଡ଼ିଲା ।

ନଦୀ କୂଳରେ ପହଞ୍ଚିବା ମାତ୍ରେ ମୋହନସିଂହ ତା କାନ୍ଧରୁ ତଳକୁ ଡେଇଁପଡ଼ି କହିଲା, "ଭାଇ, ତୁମ ବନ୍ଧୁ ପ୍ରୀତି ଫଳରେ ମୁଁ ପୁନର୍ଜୀବନ ଲାଭ କଲି । ବର୍ତ୍ତମାନ ଚାଲ, ଗଣ୍ଠିରେ ଥିବା ଧନତକ ଭାଗକରି ନେବା ।" ତାହାହିଁ ହେଲା ।



# ଚିତ୍ର-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ ୨୫

## ପୁରସ୍କୃତ ପରିଚୟୋକ୍ତି ଏପ୍ରିଲ ୧୯୮୦ ସଂଖ୍ୟାରେ ପ୍ରକାଶ ପାଇବ







- ★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଚାରି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ।
- ★ ଫେବୃଆରୀ ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର ।
- ★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ ୨୫.୦୦ ପୁରସ୍କାର ପଠାଯିବ ।
- ★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡ଼ରେ ଲେଖା ହୋଇ (ସେଥିରେ ଅନ୍ୟ କଥା ରହିବା ଅନୁଚିତ) ଜହ୍ନମାମୁଁ ଫଟୋ ପରିଚୟ ପ୍ରତିଯୋଗିତା, ଚନ୍ଦାମାମା ବିଲଡିଂସ୍, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

## ଡିସେମ୍ବର ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : "ସାନବାବୁ ଆମ ଠାକୁରପ୍ରେମୀ ।"

ଦ୍ୱିତୀୟ ଚିତ୍ର : "ବଡ଼ବାବୁ ଆମ କୁକୁରପ୍ରେମୀ ।"

ପୁରସ୍କାର ବିଜୟୀ : ସୁରେଶ ପଟ୍ଟନାୟକ, ଫୁଲବାଣୀ ।

ବିଜୟୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।

**Printed by B. V. REDDI at Prasad Process Private Ltd., and Published by B. VISWANATHA REDDI for CHANDAMAMA CHILDREN'S TRUST FUND (Prop. of Chandamama Publications) 2 & 3, Arcot Road, Madras-600 026 (India). Controlling Editor : NAGI REDDI.**

# 'ଜହ୍ନମାମୁଁ'ର ଗ୍ରାହକମାନଙ୍କ ପ୍ରତି

ଯଦି ଆପଣ ଆପଣଙ୍କ ଠିକଣା ବଦଳାଉଥାନ୍ତି, ତେବେ ପାଞ୍ଚ ତାରିଖ ପୂର୍ବରୁ ଆପଣଙ୍କ ଗ୍ରାହକ ନମ୍ବର ସମେତ ଦୟାକରି ଆମକୁ ସେକଥା ଜଣାଇ ଦେବେ । ନ ହେଲେ ପରବର୍ତ୍ତୀ ସଂଖ୍ୟା ନୂଆ ଠିକଣାରେ ପଠାଇବା ସମ୍ଭବ ହେବ ନାହିଁ ।

ଆପଣଙ୍କ ସହଯୋଗ ଆମର କାମନା ।

ଡଲ୍ଟନ୍ ଏଜେନ୍ସୀଜ୍, ମାଡ୍ରାସ - ୬୦୦ ୦୨୬

చందమామ අම්බිලි මාමා





Chandamama is published in TWELVE INDIAN Languages including English: educating and entertaining millions of readers. Our SINHALA Language edition is now dedicated to delight the children of SRILANKA

**CHANDAMAMA**

*the magazine for children makes the young and old WISE.*




চাঁদমামা CHANDAMAMA चांदोबा

# ରିଜୁ ଓ ମୁଖା

ସେଦିନ ରିଜୁର ସାନ ଭଉଣୀ ମୀନାର ଜନ୍ମଦିନ। ରିଜୁ
ପାଇଁ କି ସେ ମଜାର ଦିନ କହିବାର ନୁହେଁ —
ଜନ, ବିଜୟ, ରେଖା, ଅଶୋକ ସମସ୍ତେ ଆସିବେ—ସୁନ୍ଦର
ସୁନ୍ଦର ଉପହାର ଦେବେ।
ରିଜୁ କଣ ଉପହାର ଦେବ ? କିଛି ମୁଣ୍ଡରେ ପଶୁ ନାହିଁ !
ସେ ଏମିତି କିଛି ବିଶେଷ ଉପହାର ଦେବାକୁ ଚାହେଁ ଯାହାକି
ଅନ୍ୟ ସମସ୍ତଙ୍କଠୁ ହେବ ଅଲଗା —
ସବୁଠୁ—ସବୁଠୁ ଅଲଗା !
ରିଜୁ ଭାବିଲା-ଭାବିଲା-କେତେ ଭାବି ଭାବି କିଛି ଅନ୍ତ ପାଇଲା ନାହିଁ;
ହଠାତ ତା ମୁଣ୍ଡରେ ଏକ ବୁଦ୍ଧି ପଶିଗଲା।
ମୁଖା। ସୁନ୍ଦର ରଙ୍ଗୀନ ମୁଖା ···
କପାଳରେ ସାବୁଆ ସାବୁଆ ଚିତା, ଗାଲରେ, ଓଠ ଯୁଗଳର
ଢାଳିବା ମିଠା ଲାଲ ରଙ୍ଗ।
ଆଉ ବ୍ରସରେ ପେଣ୍ଟର କାରିଗରି ସାଜସଜ କାମ।
ସଙ୍ଗେ ସଙ୍ଗେ ଖଣ୍ଡେ କାର୍ଡ ବୋର୍ଡରେ ଏକ ମୁଖା ପେଣ୍ଟ କରି
ଦେଲା। ଆଉ ତାକୁ କାଟି ଦେଲା ଆକୃତି ଅନୁଯାୟୀ।
ସତରେ କି ସୁନ୍ଦର ରଙ୍ଗୀନ ଉପହାର ! ମୀନାର ଖୁସି କହିଲେ
ନ ସରେ। ସମସ୍ତଙ୍କ ମୁହଁରେ ରିଜୁର କଥା — ତାର ଉପହାର
ସତରେ କି ଚମତ୍କାର !
ରିଜୁ ପେଣ୍ଟ କରି ପାରିଲା-ତମେ ବି ପାରିବ।

## କ୍ୟାମେଲ

ୱାଟର କଲର୍ସ
ଓ ପୋଷ୍ଟର କଲର୍ସ









କ୍ୟାମଲିନ
ପ୍ରାଃ ଲିଃ
ଆର୍ଟ ମ୍ୟାଟେରିଆଲ
ଡିଭିଜନ
ଜେ. ବି. ନଗର
ବମ୍ବେ ୪୦୦ ୦୫୯

 କ୍ୟାମଲିନ ଅନବ୍ରେକେବଲ ପେନସିଲର ନିର୍ମାତାଙ୍କ ପକ୍ଷରୁ

VISION 791ORI

# ରାମ ଓ ଶ୍ୟାମ

## ହରଣ ଗୁଳ୍ଳି ମାମଲାରେ



















